# ଉତ୍ସର୍ଗ

ରୁଷିଆର ମହାନ୍ ଅକ୍ଟୋବର
ସମାଜବାଦୀ-ମହାବିପ୍ଳବର
ବିପ୍ଳବୀ କାବ୍ୟକାର ୰ କବି
ଭ୍ଲାଦିମିର୍ ମାୟକୋଭସ୍କିଂକ
ଲୋହିତ-ସ୍ମୃତିର ବେଦି
ତଳେ ........

ରବି ସିଂ



# ଏଥିର କବିତା ସଂପର୍କରେ....

ଏ କବିତା ଗ୍ରଂଥର କବିତାମାନଙ୍କ ସଂପର୍କରେ ତାତ୍ତ୍ୱିକ-ବ୍ୟାକ୍ଷର କୌଣସି ପ୍ରୟୋଜନ ନାହିଁ ଏହି କାରଣରୁ ଯେ, ଅବୋଧ, ଦୁର୍ବୋଧ, କୋଷ୍ଟ-କାଠିନ୍ୟ ବା କୁଂଥନଧର୍ମୀ କବିତା ଏମାନେ ନୁହନ୍ତି । ଏମାନଙ୍କର ଭାଷା, କଂଠଧ୍ୱନି ଛନ୍ଦୋବଦ୍ଧ, ଗୀତିମୟତା, ସୁବୋଧ ତଥା ସାମାଜିକ-ପ୍ରତିବଦ୍ଧତା, କାବ୍ୟିକ-ଅଂଗୀକାରରେ ଉତ୍ତରଳ ।

ସଂପ୍ରତି ସାମାଜିକ-ମୂଲ୍ୟବୋଧ ତଥା ସାଂସ୍କୃତିକ-ଅବକ୍ଷୟ ଏବଂ ମାନବିକ-ସାଯୁଜ୍ୟର ଦ୍ରୁତ ଭାଂଗଣଜନିତ ହତାଶାବ୍ୟଞ୍ଜକ ଧ୍ୱଂସର ପ୍ରଭାବ ମୋର କାବ୍ୟଲୋକ ଏବଂ ବିପ୍ଳବୀ-ମାନସିକତାକୁ ପୂର୍ବାପେକ୍ଷା ଅଧିକରୁ ଅଧିକ ଆଛନ୍ନ କରିଛି, କରୁଛି । ତାରି କଳାତ୍ମକ ତଥା କାବ୍ୟିକ-ପରିପ୍ରକାଶ ଘଟିଛି, ଘଟୁଛି ମୋର ଭାଷା, ଛନ୍ଦ, ଧ୍ୱନି, ପଦଲାଳିତ୍ୟ ଆଉ ଚିନ୍ତା-ଚେତନାରେ । ମନରେ ବାରବାର ପ୍ରଶ୍ନ ଉଠୁଛି, ଜୀବବିଜ୍ଞାନୀ ଡାର୍‌ଉଇନ୍‌ଙ୍କ ବିବର୍ତ୍ତନ-ବାଦୀତତ୍ତ୍ୱ ମୁତାବକ ମଣିଷ ହେଉଛି ବାନର ବା ମର୍କଟର ରୂପାନ୍ତର । କିନ୍ତୁ ମଣିଷର ରୂପାନ୍ତର ପୁଣି କ'ଣ ? ମନେହେଉଛି, ବୋଧହୁଏ ପିଶାଚ ! ଯିଏ ଶବକୁ କେବଳ ଚୋରିକରେ ନାହିଁ — ଲୁଟାଇ ରଖେ ମଧ । ଏହି ପ୍ରଶ୍ନ ଏବଂ ଆଶଂକା ମୋର କବିଚିତ୍ତକୁ ମଥିତ, ଆନ୍ଦୋଳିତ, ସଂତୁଳିତ କରୁଛି ଅବିରତ ।

ମୋର ଉପରୋକ୍ତ ପ୍ରଶ୍ନର ଉତ୍ତର ମୁଁ ପାଇବି ନାହିଁ, ପାଇନାହିଁ ଏକଥା ମୁଁ ଭଲଭାବରେ ଜାଣିଥିବାରୁ ମନରେ ବେଳୁବେଳ ଆସୁଛି ହତାଶା । ସାମାଜିକ ଜୀବନରେ ଅଧିକ ପାଶବିକ-ଉଲ୍ଲାସ ଦେଖିବା ଆଗରୁ ଜୀବନ ପାଖରୁ ମୋର ବିଦାୟ ଲଗ୍ନ ଅତିଶୀଘ୍ର ଘନାଇ ଆସୁ ଏହାହିଁ ମୋର ଆନ୍ତରିକ କାମନା । କାରଣ, ଏ ଜରାସନ୍ଧମାର୍କା ଦାନବୀୟ ସମାଜବ୍ୟବସ୍ଥାକୁ ମୁଁ ଏକୁଟିଆ ବଦଳାଇ ଦେଇ ପାରିବି ନାହିଁ । ତାକୁ ବଦଳାଇ ଦେଇପାରେ ଏକ ରକ୍ତକ୍ଷୟୀ ସମାଜବାଦୀ - ସାମାଜିକ ବିପ୍ଳବ । ଏହି ବିପ୍ଳବ ସେହି ଦାନବୀୟ ଜରାସନ୍ଧର ମୁକୁଟକୁ ହାତୁଡ଼ି ଚୋଟରେ ଖସାଇ ଚୂର୍ଣ୍ଣବିଚୂର୍ଣ୍ଣ କରିବାକୁ ହିଁ କେବଳ ସକ୍ଷମ ।

ମାତ୍ର ସେ ସମାଜବାଦୀ - ସାମାଜିକ ବିପ୍ଳବ ଆଜିର ଖାତକ-ଭାରତବର୍ଷରେ ସୁଦୂର ପରାହତ । କାରଣ, ସେ ବିପ୍ଳବର ଉଦ୍‌ଯୋଗ କରିବା ପାଇଁ, ତାର ଅଗ୍ରଥାଟ ହେବାପାଇଁ, ବିପ୍ଳବୀ-ନେତୃତ୍ୱ ଗ୍ରହଣ କରିବା ପାଇଁ କୌଣସି ବିପ୍ଳବୀ ଦଳ ବା ପାର୍ଟି ନାହାନ୍ତି । ଏଠି ବୁଦ୍ଧିବାଦ ଦେବାଳିଆ, ବୁଦ୍ଧିଜୀବିର୍ ଦଳ ସୁବିଧାବାଦୀ ଆଉ ଗୋଡ଼ାଣିଆ,

ତାରୁଣ୍ୟ ବିକୃତ ଏବଂ ଧନବାଦୀ-ଅପସଂସ୍କୃତିର କରୁଣ ଶରବ୍ୟ, ଚେତନା ପଙ୍ଗୁ, ବିବେକ ଖନା, ଜୀବନ ଆତ୍ମକେନ୍ଦ୍ରୀ, କ୍ଷୁଧା ଆଉ କାମ (Sex)ର ବଶମ୍ବଦପ୍ରଜା ହେଉଛନ୍ତି ଅଗଣିତ ନିରୀହ ଶାନ୍ତିପ୍ରିୟ ଜନସାଧାରଣ । ଏ କ୍ଷେତ୍ରରେ ବିରାଜିତ ସ୍ଥିତାବସ୍ଥା ଆଉ ସମାଜବ୍ୟବସ୍ଥାର ଆମୂଳ ପରିବର୍ତ୍ତନର କଳ୍ପନା ଏକ ରୋମାଂଟିକ୍ - ବିପ୍ଳବୀର ଆକାଶ କୁସୁମର ପରିକଳ୍ପନା ବ୍ୟତୀତ ଅନ୍ୟ କିଛି ହୋଇ ପାରେନା ।

...... ତଥାପି ସବୁ ସତ୍ତ୍ୱେ ସାମାଜିକ ବିପ୍ଳବ ଛଡ଼ା ପଥ ନାହିଁ .... ପଥ ନାହିଁ । ବିପ୍ଳବ ବ୍ୟତିରେକେ ମାନବିକ ମୂଲ୍ୟବୋଧର ପୁନରୁଦ୍ଧାର, ତାର ସୁରକ୍ଷା ଆଉ ବିକାଶ ଏବଂ ଅଭିବୃଦ୍ଧି ନଘଟିଲେ ମଣିଷର ରୂପାନ୍ତର ଘଟିବ ପିଶାଚରେ – ତାର ପ୍ରକ୍ରିୟା ପ୍ରାୟ ଆରମ୍ଭ ହୋଇଯାଇଛି । ସେ ପ୍ରକ୍ରିୟାକୁ ବାଧା ଦେବାର, ପ୍ରତିରୋଧ କରିବାର ବିପ୍ଳବୀ - ଚେତନାର ଦେଖାଦର୍ଶନ ନାହିଁ । ଏହାର ଭୟାନକ ଫଳଶ୍ରୁତି ହେଉଛି ଜାତୀୟ-ଆତ୍ମହନନ ।

ଏ ଅବସ୍ଥା, ଏ.ପରିସ୍ଥିତିକୁ ଦେଖିବା, ତାର ବିଭୀଷିକାକୁ ଅନୁଭବ କରିବାର ମର୍ମାନ୍ତିକ ଯନ୍ତ୍ରଣା ମୋ ଭିତରେ ଯେଉଁ ବୈଚଳିତ୍ୟର ସୂତ୍ରପାତ କରିଛି ତାର ଅଂଶୀଦାର ବା ଭାଗୁଆଳି ହେବା ପାଇଁ ପ୍ରାୟ କେହି ନାହାନ୍ତି କହିଲେ ଚଳେ । ତେଣୁ ମୁଁ ଘୋରତର ଭାବରେ ଏକୁଟିଆ, ଜଣେ ନିଃସଂଗ ନୟାନ୍ତ ପଥୁକୀ ।

ସମାଜ ପ୍ରତି, ମଣିଷ ପ୍ରତି ମୋର, ମୋ କବିତ୍ୱର, ମୋର ସାରସ୍ୱତ ପ୍ରତିଭାର କିଛି କର୍ତ୍ତବ୍ୟ ଆଉ ଅଂଗୀକାର (Commitment) ଅଛି । ତାରି ତାଡ଼ନାରେ ମୋର ବକ୍ତବ୍ୟ, ଉଦାତ୍ତ ଆହ୍ୱାନ ହେଉଛି **ଖସାଅ ମୁକୁଟ** । ମାତ୍ର ସେ ମୁକୁଟ ନିର୍ବାଚନ ସର୍ବସ୍ୱ ରାଜନୀତି ବାଟରେ ଖସିବ ନାହିଁ, ଖସେନାହିଁ, ଖସିନାହିଁ । ସେ ମୁକୁଟ ଖସିବ ବିପ୍ଳବର ପ୍ରସୂତୀ-ବେଦନା ଆଉ ତାର ଅନିବାର୍ଯ୍ୟ ରକ୍ତସ୍ରାବରେ । ଏହା ଅଲଂଘନୀୟ ଐତିହାସିକ ସତ୍ୟ ଆଉ ବାସ୍ତବତା ଏବଂ ଇତିହାସର ଦୁର୍ବାର ଘୂର୍ଣ୍ଣିଝଂଜା । ଆଜି ନହେଲେ ବି କାଲି ଏହି ସାମାଜିକ ବିପ୍ଳବ ବା ଐତିହାସିକ-ଅଗ୍ନିଉତ୍ସବକୁ ସମାହିତ କରିବାକୁ ହେବ । ଏହି ଆଶା, ଏହି ଲୋହିତସ୍ୱପ୍ନ ଦେଖି ଆଜି ଅପରାହ୍ନର ଆକାଶ ତଳେ ମୋର ଗତି ।

ମୋର ଦରଦୀ, ମରମୀ, ସଚେତନ, ଶ୍ରଦ୍ଧାଳୁ ପାଠକ-ପାଠିକାମାନଂକୁ ଏହି ବାର୍ତ୍ତା ଦେବା ଛଡ଼ା ମୋ ଭଣ୍ଡାରରେ ଆଉ କିଛି ନାହିଁ ।

ପରିଶେଷରେ ଏହାର ପ୍ରକାଶକଂକୁ ଗଭୀର ଧନ୍ୟବାଦ ।

**ରବି ସିଂ**



## ସୂଚୀପତ୍ର





# ଜୟ ଜଗନ୍ନାଥ

## ।। ଏକ ।।

ଶଗଡ଼ର ଚକ ପରି ଗୋଲ୍ ଗୋଲ୍ ଜଗନ୍ନାଥ ଆଖି
ପଲକ ପଡ଼େନା ମୋଟେ, ସବୁ କିନ୍ତୁ ପାରେ ସିଏ ଦେଖି ।
ନାହିଁ ତାର ହାତଗୋଡ଼, ଗତିଶୀଳ ନୁହେଁ, ସେତ ସ୍ଥାଣୁ,
ହେଲେ ବି କରିତ୍‌କର୍ମା, ତା ପାଇଁକି ଲୋତକର ରେଣୁ –
ବିଞ୍ଚିଦିଏ ଭକ୍ତଜନ, ସେ କୁଆଡ଼େ ସ୍ୱୟଂ ଭଗବାନ !
ହସି ମୋର ପେଟଫାଟେ, ହସି ଉଠେ ପଦାର୍ଥବିଜ୍ଞାନ ।

ଘନ କଳା ଅଫିମର ରାଜଧାନୀ ଏ ସହର ପୁରୀ,
ମଲାଙ୍ଗର ପୀତକୁଞ୍ଜ, ଅଳସୁଆ, ଦଳେ କର୍ମକୋଢ଼ି,
ବାରମାସେ ତେରଯାତ୍ରା, ଦିନରାତି ଭଜନ, କୀର୍ତ୍ତନ,
ହରେକ୍ ରକମ ଜୀବ, ଧଳାଶାଢ଼ି, ଗାମୁଛା, କୌପୀନ ।
ବାଞ୍ଛ ଏଠି ଝାଞ୍ଜ ପିଟେ, କରେ ପୁଣି ହବିଷ, କାର୍ତ୍ତିକ,
ଗାଡ଼ିଆକ ମାଛଖାଇ ବସିଛନ୍ତି ଏଠି ଧର୍ମବକ ।
ଅନୁତ୍ପାଦକ ଯେତେ ସାଜିଛନ୍ତି ଏଠି ଧର୍ମଧ୍ୱଜୀ,
ନିକମାର ପେଟବଢ଼େ, ଯେତେ ସବୁ ପରଅନ୍ନ-ଭୋଜୀ,
ମଣିଷର ଜ୍ଞାନ ଆଉ ବିଜ୍ଞାନର ଗତିବାନ ଚକ –
ପଛକୁ ଘୁରାନ୍ତି ବସି ମାରାତ୍ମକ ଦି'ଗୋଡ଼ିଆ ଯୋକ ।
ଭାଗ୍ୟବାଦୀ ଏ ମଣିଷ ପଡ଼ିଅଛି ୟାଙ୍କରି ହାବୁଡ଼େ,
ଆପଣାର ଅଜାଣତେ ଏମାନଙ୍କୁ ରକ୍ତଦାନ କରେ ।

ଶୋଷକ-ଶୋଷିତ ଏଠି ଭୁଲି ନିଜ ଶ୍ରେଣୀଧର୍ମ ଭେଦ,
'ଧର୍ମ' ନାମେ ପଢ଼େ ବସି ଘୋର କଳା ଅଫିମର ବେଦ ।
ସ୍ଥିତାବସ୍ଥା ଦୃଢ଼ ହୁଏ ବେଲୁବେଳ ଶୋଷଣର ଭିଟା
ନିକମାର କାମ ଏଠି 'ଜାଗାଘରେ' ବସି ଭାଙ୍ଗଘୋଟା ।

ଦେଉଳ ଭିତରେ ବୁଲି ପଣ୍ଡା ମାରେ ଭକ୍ତଠାରୁ ମାଲ୍
ଜଗନ୍ନାଥ ମହିମା ଏ, ଶ୍ରୀକ୍ଷେତ୍ରର ଇଏ ହାଲ୍‌ଚାଲ୍ ।
ମଠରେ ଜମୁଛି ମେଦ ମହନ୍ତର ନିତମ୍ବେ, ଗର୍ଦ୍ଦନେ,
ସୁନ୍ଦରୀ ଗୌରାଙ୍ଗୀ ମାତା ଅନାବୃତ ବେନି ପୀନସ୍ତନେ,
କନ୍ଦର୍ପର ପଞ୍ଚଶରେ ଟଙ୍କାରଇ ଚେଲାର ଭ୍ରୂଧନୁ,
ପ୍ରବଳ ରୋମାଞ୍ଚ ଜାଗେ ଅବିରତ ଆବେଗର ବନୁ ।
ନିରୁଦ୍‌ବେଗ ବିଶ୍ରାନ୍ତିରେ ''ବ୍ରହ୍ମଚର୍ଯ୍ୟ'' ହୁଏ ବିଗଳିତ,
ଅରୁଆ, ଡ଼ାଲମା, ଖଟା, ବେସର ଓ ଖାଣ୍ଟି ଦେଶୀଘୃତ,
ଦଧି ଆଉ ଦୁଧସର ଅଗ୍ନିମାଂଦ୍ୟ ଘଟାଏ ଉଦରେ,
ଧବଳ ବସନା ମାତା ସନ୍ୟାସିନୀ ଚାଲେ ଅଭିସାରେ ।
ରାତିର ନିଷିଦ୍ଧ ଯାମେ ସଂଗୋପନେ ରତିର ବେହେଲା –
ବାଜିଉଠେ କାମାୟନୀ, ରତିକ୍ଲାଂତ ମହନ୍ତ ଓ ଚେଲା ।

ପଣ୍ଡାକୁ ନଦେଲେ ଘୁଷ୍
ଜଗନ୍ନାଥ ଦେବେନାହିଁ ଦେଖା,
ବ୍ରାହ୍ମଣ୍ୟ-ସଂସ୍କୃତି ଇସ୍
କି ଭୋକିଲା, ଉଲ୍ଲଙ୍ଗ ବୁଭୁକ୍ଷା !

ସାମାଜିକ-ତସ୍କରର ଦଳ,
ଦେଉଳରୁ ଆଶୀର୍ବାଦ ଘେନାକରେ ଦୁଃଶାସନ ଖଳ ।
ତାପରେ ବାଗେଇ ଧରେ ପୀଡ଼ନର ସୁତୀବ୍ର ଚାବୁକ,
ଭୋଗିବାକୁ ପାଞ୍ଚବର୍ଷ ରାଜନୀତି କ୍ଷମତାର ସୁଖ ।
ସିଂହଦ୍ୱାରୁ ସୁରୁ ହୁଏ ଶୋଷଣର ଘୃଣ୍ୟ ପଟୁଆର,
ନବକଳେବର ଘେନେ ବେଲୁବେଲ ଜନ-ଅତ୍ୟାଚାର ।
ଫୁଲ୍‌ନେତା, ହାଫ୍‌ନେତା, କୁଜୀନେତା, ଯେତେ ରାଜବଣୀ,
କେଉଁପରି ପାରିହେବେ ନିର୍ବିଘ୍ନରେ ଭୋଟ୍-ବୈତରଣୀ –
କରନ୍ତି କାମନା,
''ପାରିକର ଚକାଆଖି, ଆଶ୍ରାତବ ନୀଳଚକ୍ର ବାନା ।''

କେଉଁ ମୁଖ୍ୟମନ୍ତ୍ରୀ କୁହେ ଜଗନ୍ନାଥ ତାର କ୍ଲାସ୍‌ମେଟ୍,
ସାଙ୍ଗହେଇ ପଢୁଥିଲେ କଲେଜରେ, ହେଉଥିଲେ ଫାଷ୍ଟ୍ ।

ଦେଉଳରୁ ଖସେ ଶିଳା, କେତେବେଳେ ଜଗନ୍ନାଥ ପ୍ରାଣ –
ପକ୍ଷୀଟାତ ଯିବ ଉଡ଼ି, କଲେ ତାକୁ ଲୁହାରେ ନିର୍ମାଣେ,
ରହିବ ସେ ନିରାପଦ, ଭାବୁଭାବୁ କ୍ଷମତାର ଭାଲୁ –
ପଳାଇଲା ଅରଣ୍ୟକୁ, ଥମିଗଲା 'ଚକ' ବୁଲୁବୁଲୁ ।
''ଲୋକଟା ଢ଼ହରା ଅଛି, ବେହିପୁଅ ହେଇଚି ପାଗଳ''
ଏକଥା ଉଠନ୍ତି କହି ପଣ୍ଡା ଆଉ ପୁରୋହିତ ଦଳ ।

॥ ଦୁଇ ॥

ଗୋଡ଼ ନାହିଁ ଚାଲିପାରେ, ହାତନାହିଁ କରେ ସବୁ କାମ
ଅପଲକ ଆଖି ତାର ସବୁ ଦେଖେ, ତେଣୁ ସାବଧାନ !
ଟି. ଭି. ଆଉ ରେଡ଼ିଓରେ ଭଡ଼ାଟିଆ ଘୋଷକ-ଘୋଷିକା,
ନିଜକୁ କାଟନ୍ତି ଚିତା, ମଣିଷକୁ ରାମାନଂଦୀ ଟୀକା ।

ଶୋଷକ-ଶୋଷିତ ଏଠି ବାଘ-ଛେଳି, କୁରୁ ଓ ପାଣ୍ଡବ –
କୋଳାକୋଳି, ପ୍ରେମେ ମତ୍ତ, ଥୋଇ ଦେଇ ଗଦା ଓ ଗାଣ୍ଡୀବ ।
ଅବନତ କରି ଗ୍ରୀବା, ପଣ୍ଡାଠାରୁ ଧଣ୍ଡାମାଳ ନେଇ,
ମାଳପାଣି ଦେଲାପରେ ସେହି ମାଳା ଅନ୍ତର୍ଦ୍ଧାନ ହୋଇ –
ପୁଣି ତାହା ପଡ଼େ ଯାଇ ଆଉ ଜଣେ ଭକ୍ତର ଗଳାରେ,
ବିନା ମୂଳଧନେ ସିନା ଏ ବେପାର ସାଗର ବେଳାରେ ।
ରକେଟ୍ ଯୁଗରେ ରଥ, ପରମାଣୁ ଯୁଗରେ ତ ଧନୁ,
ପୂଜାପାଏ ବାନର ତ ବୁଦ୍ଧିହୀନ ବଳଶାଳୀ ହନୁ ।
ରାମ ଆଉ ଆଲ୍ଲା ଦୁହେଁ ମୁକ୍ତକଚ୍ଛ ପୁଣି ଗଡ଼ାଗଡ଼ି,
ଲାଠି, ଲୁଙ୍ଗୀ, ଛୁରୀ, ଦାଢ଼ି, ତ୍ରିଶୂଳ, ପଗଡ଼ି,
ମଣିଷର ଜୀବନଟା ଶହେଭାଗ ଅଯୋଧ୍ୟା, ଦ୍ୱାରକା
ଦଙ୍ଗା ସାଥେ ରକ୍ତଗଙ୍ଗା, ମନି, ଖୁନୀ, ଭୋଟ୍ କିଣାବିକା ।
ମଦ, ବେଦ; ଚିତା, ଗୀତା, ଯନ୍ତ୍ରଣା ଓ ଜୀବନ-ମରଣ,
ଲାଠି, ଗୁଳି, ହତ୍ୟା, ବାତ୍ୟା, ଅନଶନ, ପୁଣି ଆନ୍ଦୋଳନ,
ଧର୍ଷଣ, ଯୌତୁକହତ୍ୟା, ଲାଭଖୋରୀ, ଚଢ଼ା ଦରଦାମ୍
ଲଜିଂରେ ରଘୁପତି, ଚିକେନ୍ ଓ ସରାପ୍‌ର ଜାମ୍ ।

ଅପସଂସ୍କୃତିର ବିଷ ଦିବାରାତ୍ରି ଟି. ଭି. ପରଦାରେ
ବଡ଼ଭାଇ ମାଆପରି ଦେଖାଯାଏ ସଢ଼ା-ସଭ୍ୟତାରେ ।
ଏ ସବୁକୁ ମାରଗୁଲି, ଘୋଷଯାତ୍ରା ଗର୍ଜେ ବେତବାଡ଼ି,
ସ୍ୱର୍ଗପ୍ରାପ୍ତି ହେବ ହେବ ଟାଣ ଆସି ରଥର ଦଉଡ଼ି ।
ନଗରକୀର୍ତ୍ତନ କର, ବିଲ ତେଣେ ପଡ଼ୁରେ ପଡ଼ିଆ
ନିତମ୍ବ ନଚାଇ ଖାଅ ଖଣ୍ଡେ ଖଣ୍ଡେ ଦାସିଆ ନଡ଼ିଆ ।
ମାନସିକ-ଖାସୁ ସବୁ, ନିକମାଙ୍କ ବିଚିତ୍ର ଛାଉଣି,
ଏ ସହର ପଙ୍ଗୁତାର, ଗୋଦରର ଦୃଢ଼ ରାଜଧାନୀ ।

ମୋ ଜାଗ୍ରତ ବସ୍ତୁସତ୍ତା ହୋଇଉଠେ ପ୍ରଚଣ୍ଡ ବିଦ୍ରୋହୀ,
ଟେକି ମୋ ଜିରାଫ୍‌ଗ୍ରୀବା ଆ-ସମୁଦ୍ର ପୃଥିବୀକୁ ଚାହିଁ,
କହିବାକୁ ଇଚ୍ଛାହୁଏ ଉଚ୍ଚସ୍ୱରେ ଯେପରି ଭାଷଣ :
ବନ୍ଦକର ସଂକୀର୍ତ୍ତନ, ବନ୍ଦକର ନିତମ୍ବ ନର୍ତ୍ତନ ।
ଏଥିରେ ତ ଚଳିବନି ଫ୍ୟାକ୍‌ଟ୍ରି ଆଉ କଳ କାରଖାନା,
କର୍ଷିତ ହେବନି ଭୂମି, ଫଳିବନି ସ୍ୱର୍ଣ୍ଣ ଶସ୍ୟକଣା ।
ଭଡାଟିଆ ହେ ଘୋଷକ, ବନ୍ଦକର ଧାରାବିବରଣୀ,
ଶୁଣିକି ପାରୁନା ମୂର୍ଖ କାନ୍ଦେ ବସି ପତିତା ଧରଣୀ ?
ମଣିଷ ଉପରେ ବଢ଼େ ମଣିଷର ନଗ୍ନ ଅତ୍ୟାଚାର
ପୃଥିବୀର ପଥେ ପଥେ ପଶୁତ୍ୱର ନବକଳେବର ।
ବ୍ରହ୍ମାଣ୍ଡର ସ୍ରଷ୍ଟା ତମ ଜଗନ୍ନାଥ କିପାଇଁ ନୀରବ ?
ଶ୍ୟାମଳଗ୍ରହରେ ଯେବେ ଜିଭଚାଟେ ବିଶ୍ୱଗ୍ରାସୀ ଲୋଭ,
ପାରୁନାହିଁ ଜଗନ୍ନାଥ କରି କିଆଁ ତାର ପ୍ରତିକାର ?
କୁହ ଭକ୍ତ, ହେ ମହଂତ, କୁହ ମାତା ଆଉ ଚେଲାଦଳ !
କୁହ ପଣ୍ଡା, ପଡ଼ିହାରୀ, ଗଜପତି, ଅନିତ୍ୟ ସାଧକ,
ପଚାରେ ବିଜ୍ଞାନ ଆଉ ବାସ୍ତବତା, ବିବେକ ଓ ଭୋକ ।

## ।। ତିନି ।।

ମଣିଷର ଧର୍ମ ନାହିଁ, ଧର୍ମ ତାର ମାନବତାବାଦ,
ଶ୍ରମର ସାଧନା ତାର ନବ ନବ ସୃଷ୍ଟିର ସଂବାଦ ।
ଆଜି ସେ ମାନବବାଦ ଭୂଲୁଂଠିତ ପୃଥିବୀର ପଥେ,
ଜୀବନ-ମରଣ ଆଜି ହାତାହାତି ପ୍ରଚଣ୍ଡ ସଂଘାତେ ।

ଏ ଯୁଦ୍ଧେ ବିଜୟ ଲାଭ ଯେତେବେଳେ ପ୍ରାଥମିକ କଥା,
ସେତେବେଳେ ଜପତପ, ପୂଜାପାଠ, ଚଇତନ, ଚିତା
କାଠ-ପଥରର ପୂଜା, ଧ୍ୟାନ ଆଉ ଅନିତ୍ୟ ସାଧନା,
ଅସାମ୍ୟକୁ ଦୃଢ଼କରେ, ସଂଗ୍ରାମକୁ କରେ ବାଂଟବଣା ।
ମୃତବୃକ୍ଷ ଗଣ୍ଡିନୁହେଁ କେବେହେଲେ ଜଗତର ନାଥ,
ମଣିଷହିଁ ଜଗନ୍ନାଥ, ରକ୍ତେ ଭିଜା ତାର ଜୟନେତ ।
ମଣିଷର ମେଧା ଜ୍ଞାନ, ଶ୍ରମ, ଚିନ୍ତା ସୌର୍ଯ୍ୟ ଆଉ ବୀର୍ଯ୍ୟ
ସୃଷ୍ଟିର ଆବେଗ ତାହା, କଳା ଆଉ କୃଷ୍ଟିର ସୌନ୍ଦର୍ଯ୍ୟ ।
ସମାଜର ସିଂହାସନେ ସେହି ପୂଜ୍ୟ, ପ୍ରଣମ୍ୟ ତ ସିନା,
ବିଶ୍ୱର ତୋରଣେ ତମେ ପଙ୍ଗୁତ୍ୱର ତୁଚ୍ଛ ଘୃଣ୍ୟବାନା –
ଉଡ଼ାଇବ କେତେକାଳ ? ପ୍ରଶ୍ନକରେ ଦ୍ୱନ୍ଦର ବିଜ୍ଞାନ,
କାର ଅକ୍ତିଆରେ ଆଜି ଜମି, ପୁଞ୍ଜି, ପୃଥିବୀର ଧନ ?
ବହୁକାଳ ପରେ ପୁଣି ଜରାସନ୍ଧ, ଦୁର୍ଯ୍ୟୋଧନ ଜ୍ଞାତି –
ଗଢ଼ିଲେଣି ଦରବାର ଇତିହାସେ ହିଂସ୍ରଡ଼ା, ଦୁର୍ମତି ।
କଂସର ଦାୟାଦ ପୁଣି ଘୁରିଲେଣି ଶିଶୁହତ୍ୟାକାରୀ,
ଦେବକୀ ଅଷ୍ଟମଗର୍ଭ ପଥଖୋଜେ, ସୂଚନା ତାହାରି –
ଆକାଶରେ ଚାରିମେଘ, ବଜ୍ରଧ୍ୱନି, ଇନ୍ଦ୍ରମେଘ ପାଣି,
ଜନ-ଯମୁନାରେ ବନ୍ୟା, ହୋଇଉଠେ ରାତି ବିଦ୍ରୋହିଣୀ ।
ଭେଦିବାକୁ ଶେଷବ୍ୟୂହ ଯେତେବେଳେ ବୀର ଧନଞ୍ଜୟ,
ଧରଣୀର ରଣାଙ୍ଗନେ ହାତେ ତାର ଗାଣ୍ଡୀବ ଅଥୟ,
ଯେତେବେଳେ ଭୂମିକମ୍ପେ, ଭୂଗର୍ଭରେ ଧାତୁଟା ଚହଲେ,
ସେତେବେଳେ କୁରୁ ଆଉ ପାଣ୍ଡବର ଭେଦ ଭୁଲିଗଲେ,
ଅସମ୍ଭାଳ ହେବ ସବୁ, ଶକୁନୀର କୂଟ ପଶାପାଲି,
ଉଦୟ ସୂର୍ଯ୍ୟକୁ ନେଇ ଅସ୍ତାଚଳେ ଦେବତ ଫୋପାଡ଼ି ।

ମଣିଷହିଁ ମଣିଷକୁ ମୁକ୍ତକରେ କହିଛି ବିଜ୍ଞାନ,
ଦୁଃସମୟୁ ସୁସମୟେ ମଣିଷର ଅଗ୍ର ଅଭିଯାନ, –
ଘଟିଅଛି ଚିରକାଳ, ଇତିହାସ ହୋଇଛି ସମୃଦ୍ଧ
ମଣିଷ ଲେଖିଛି ଗ୍ରନ୍ଥ ବାଇବଲ, କୋରାନ୍ ଓ ବେଦ ।
ମଣଷକୁ ସୃଜିନାହିଁ କେଉଁ ମୂର୍ତ୍ତି, ମୂର୍ତ୍ତିକୁ ମଣିଷ, –
ଗଢ଼ିଛି ମନ୍ଦିର, ମଠ ମଣିଷର ସବୁ ହାତଯଶ ।

ଏଇ କଥା କହି ଗର୍ଜେ କିଛିଦୂରେ ମହୋଦଧି ଜଳ
ହାଣେ ତାର କରାଘାତ ଉପକୂଳେ ପ୍ରବଳୁଁ ପ୍ରବଳ ।
ପ୍ରତି ଢେଉ ବହିଆଣେ ମଣିଷର ବିଜୟ ସଂବାଦ,
ବଧିର ଶୁଣେନା ତାହା, ଦେଉଳକୁ ଶୁଭେନା ଶବଦ ।
ଜଗତର ଯିଏ ନାଥ, ସିଏ ଆଜି ଅନାଥ, ଶୋଷିତ
ଧରଣୀର ବିନ୍ଧାଣୀ ସେ, ତାର ଶ୍ରମ, ତାର ମେହନତ,
ନାନାଭାବେ ଆତ୍ମସାତ କ୍ଷେତେ, ପଥେ, ଖମାରେ, ଖାଦାନେ
ବିଦ୍ରୋହର ଆସନ ତା ସେଥିପାଇଁ ଝଡ଼ର ମଥାନେ ।
ତାର ସେହି ବିଦ୍ରୋହର ଦାଢ଼ —
ଦନ୍ଥଡ଼ା କରିବା ପାଇଁ ଘୋଷଯାତ୍ରା, ଦେବାଦେବୀ ମେଢ଼ ।

॥ ଚାରି ॥

ଖୋଲ ଦ୍ୱାର, ଉଠ ଆରେ ଯେତେ ଧର୍ମଭୀରୁ !
ସକାଳ ହେଲାଣି ଭାଇ କେତେବେଳୁ, ତମରି ଦୁଆରୁ —
ସକାଳର କାକଦଳ ଗଲେଣିତ ଉଡ଼ି,
ଦ୍ୱିପ୍ରାହରିକ ସୂର୍ଯ୍ୟ ଜଳେ ଉର୍ଦ୍ଧ୍ୱେ, ବାଜିଉଠେ ସମୟର ଘଡ଼ି ।
ବିଦ୍ରୋହ, ବିକ୍ଷୋଭ ଆଉ ଆନ୍ଦୋଳନ ଘରେ ଓ ବାହାରେ
ପୃଥିବୀର ପଥେ ପଥେ, ଗ୍ରାମେ, ଗଂଜେ, ସହରେ, ନଗରେ ।
ପଶୁ ସାଥେ ମଣିଷର ହାତାହାତି, ମରିଥିବା ମଣିଷର ପ୍ରେତ
ମଶାଣିର ବୁକୁଚିରି ଗାଇଉଠେ ଜୀବନର ଗୀତ ।
ସେ ଗୀତର ସୁରଭିତ ମନଲୋଭା ଆଗ୍ନେୟ ପାଖୁଡ଼ା —
ମାନବର ଜୟରଥେ ବୃଷ୍ଟିହୁଏ, ମାନବତା ଛଡ଼ା —
ଧର୍ମନାହିଁ ମଣିଷର, ମଣିଷହିଁ ଜଗତର ନାଥ
ମଣିଷହିଁ ଇତିହାସ, ସବୁରତ ସେହି ଉପୋଦ୍‌ଘାତ ।
ମାନବ ଚରଣ ସ୍ପର୍ଶେ ପାଷାଣୀ ତ ହୁଏ ନବବଧୂ,
କଥାକୁହେ ମୂକ, ଜଡ଼, ବନ୍ଦୀ ଲଭେ ମୁକତିର ସ୍ୱାଦୁ ।

ନିଷ୍ପ୍ରାଣର ପୂଜା,
ଥାଉ, ସେତିକିରେ ଥାଉ
ପ୍ରାଣବନ୍ତ ଭୋଗେ ଆଜି ସଜା ।

ଆଗେ ତାର ମୁକ୍ତି ଲୋଡ଼ା
ଭାଙ୍ଗିପଡୁ କାରାର ଅର୍ଗଳ,
ଏଇକଥା କୁହେ ଆଜି
ମାନବତା, ଦେବକୀ ମାଆର –
ଦୀର୍ଘଶ୍ୱାସ, ଆଖିଲୁହ
ପୃଥିବୀର କୁରୁସଭା ତଳେ,
ମଣିଷର କୁଳବଧୂ ବିବସନା
ଦୁଃଶାସନ ହାତେ ଯେତେବେଳେ;
ସେତେବେଳେ ଭାଙ୍ଗଘୋଟା
ବନ୍ଦକରେ ଯେତେ ଭୋଳାନାଥ !
କାତର ଆକୁତି କରେ
ଜଗନ୍ନାଥ ମଣିଷ ନିୟୂତ ।

ପବନର ପ୍ରତି ରନ୍ଧ୍ର ଚିରି,
ଚେତାନାର ଅଗ୍ରଥାଟ
ଯେତେବେଳ ଆସୁଛି ବାହାରି;
ତାକୁ ମୁଁ ପ୍ରଣାମ କରେ
ତମେ ସବୁ ଜଣାଅ ପ୍ରଣତି,
ଧରଣୀରୁ ଧ୍ୱଂସ ହେଉ
ନରସୃଷ୍ଟ ନରକର ଭୀତି ।



ର. କା.
୧ ଜୁଲାଇ ୯୫
ରାତି ୧୦ଟା

# ପିଶାଚ

ହେ ନାରି ଛଳନାମୟି !
ତମ ଆଚରଣ କ୍ରମାଗତ ମୋତେ କରିଛି ତ ସଂଦେହୀ ।

ମଖମଲଦେହୀ-ବାଘୁଣୀର ଦଳ, ପ୍ରବଳ ସୁବିଧାବାଦୀ
ନଦୀପରି ତମେ ଅବିଶ୍ୱାସିନୀ, ଛଳନାଟା ବୁନିଆଦି ।
ତମରି ମନର ଗୋପନ ଗଭୀରେ ପ୍ରତାରଣା-ବିଷଧର
ଶୋଇଥାଏ ଧରି ବିଷ-କୁଣ୍ଡଳି, ଯେତେ ବିଷ-ଫୁତ୍‌କାର –
ଯଉବନ ତମ ସଉଁଦର୍ଯ୍ୟର ତଳେ ରହିଥାଏ ଲୁଚି,
ତମେ ମାୟାବିନୀ ଦିବସ ରଜନୀ ମାୟାଜାଲ ବସ ରଚି ।
ତମରି କୁଟିଳ ପ୍ରସାରିତ ଫଣା ଯେଉଁ ଆଖିନେଇ କବି –
ଦେଖି ମୁଁ ଆସିଲି, ସେପରିତ କେହି ଦେଖିନାହିଁ ତାର ଛବି ।
କି ଭୀଷଣା ତମେ ସରୀସୃପ ଗୋ, ଛଦ୍ମ ତମର ଠାଣି,
ପୀନପୟୋଧର, ଗୁରୁନିତମ୍ବ, ଦୋଳା-ଚଞ୍ଚଳ ବେଣୀ,
ଚରଣେ ଲାକ୍ଷା, ଭାଲେ କୁଙ୍କୁମ, ଆଖିରେ ପଶୁର ଭୋକ
''ପାତିବ୍ରତ୍ୟ''ର ଫଳକ ବାହିକା, ''ସତୀଶିରୋମଣି'' ଭେକ ।
ମନରେ ପ୍ରାଣରେ ସମ୍ଭୋଗ ନିଶା, ପ୍ରେମନୁହେଁ, କାମ ନିଆଁ,
ପ୍ରତାରଣା ହେଲା ତମ ଅଭିଧାନେ ପ୍ରେମର ଅନ୍ୟ ନାଆଁ ।

ନୀଳନର୍କର ନାୟିକାର ଦଳ, ଖାଉଟିବାଦର ଦୂତୀ
ଆତ୍ମକେନ୍ଦ୍ରୀ ଚଳମାନ ଘଟ, ଲୋଭନୀୟା ବିକୃତି ।
ତମେ ସୁକାନ୍ତି, ତମେ ବାସନ୍ତୀ, ଟୁନି, କୁନି, ମାମୀ, ମାଳା,
କାମିନୀ, ଚପଳା, ବିଜୟଲକ୍ଷ୍ମୀ, କୁମୁଦିନୀ, ଯଶୋଧାରା ।
ରେବତୀ, ସେବତୀ, ମଲ୍ଲୀ, ଶେଫାଳୀ, ଯୂଥିକା ଓ ଅନୁପମା,
ନଳିନୀ, ଶାନ୍ତି, ଭାନୁମତୀ, ଉଷା, ମାଳବିକା, ନିରୂପମା ।
ସବୁ ତ ପିଆଜ, ଖାଲି ଚୋପାମୟ, କାମନାର ମହାରାଣୀ,
ସବୁ ବିଷବଧୂ, ବିଷମଧୁ ସିନା, ସଙ୍ଗୀତ କାମାୟନୀ ।
ଆଦିମ କ୍ଷୁଧାର ନୀଳ-ଦେବାଳୟ, ମୋହିନୀ ତମର ଛବି,
ତମରି ପାଇଁକି ରାଜ୍ୟ ଜଳିଛି, ମରିଛି ଶିଳ୍ପୀ, କବି ।

ରାଜା ତ ହୋଇଛି ପଥର ଭିକାରୀ, ଟଳିଛି ସିଂହାସନ,
ଦୁଃଖର କଥା, ହେଲା ନାହିଁ ତମ ଆତ୍ମୀକ-ଉତ୍ଥାନ !
ତମେ ତ ସୋଫିଆ [୧] ତମେ ଜାନ୍‌ଥିପି [୨] ତମେ ତ ମନ୍ଦୋଦରୀ
ବିଭୀଷଣ କୋଳେ ଶୋଇ ରାବଣର ସ୍ମୃତି ତମେ ପାର ଭୁଲି ।
ବାଳିକୁ ଛାଡ଼ିତ ସୁଗ୍ରୀବେ ଧର, ପାଇ ବି ପଞ୍ଚପତି –
ତୃଷ୍ଣା ମଲାନି, କର୍ଣ୍ଣର ସାଥେ କରିବା ପାଇଁ କି ରତି,
ମନେ ମନେ ପୁଣି କୃଷ୍ଣ କେଶବ ଛବି ଆଉ ତାର ପ୍ରେମ,
କି ପ୍ରବଳ ଭୋକ ଯାଜ୍ଞସେନୀ ଗୋ ! ଟାଙ୍କୁରି ଉଠେ ଲୋମ ।

ଆଧୁନିକ ଯୁଗେ ପ୍ରାକୃତିକ ସେ ଗର୍ଭୋଦୟର ବାଧା –
ଉଠିଗଲା ପରେ ନାରୀ ପାଲଟିଛି ଆଧୁନିକା ଗୋପୀ, ରାଧା ।
''ସତୀ-ଅସତୀ''ର ସଂଜ୍ଞା ପଳାଇ ରହିଅଛି ଅଭିଧାନେ,
ପ୍ରଣୟ ଭୁଲିଛି ନିଜ ବାପ ନାଆଁ ''ପରିବାର ନିୟୋଜନେ ।''

ମନେ ମନେ ଆଜି ଅବିଶ୍ୱାସର ବିଷ –
ଜମେ ଧୀରେ ଧୀରେ ଘରେ ଓ ବାହାରେ, ତା ଭିତରେ ବସବାସ –
କରେ ତ ମଣିଷ, ଜୀବନଟା ଲାଗେ ସବୁବେଳେ ଏକା ଏକା,
ହୃଦୟେ ହୃଦୟେ, ଅସ୍ତ-ଉଦୟେ ଏକାକୀତ୍ୱର ଶିଖା ।
ମାନବମୈତ୍ରୀ ମରେ ଧୀରେ ଧୀରେ, ପ୍ରବଳ ଯାନ୍ତ୍ରିକତା,
ତ୍ରିଶିରା, ମାରୀଚ, ଖର ଓ ଦୂଷଣ ଦୁନିଆର ଜନନେତା !
ଆଉ ଅଷ୍ଟମ ଗର୍ଭର ଭ୍ରୁଣ ହେବନାହିଁ ସଂଚାର,
ଏକଥା ଜାଣିଛି ଆଦିମ ଦୁଷ୍ଟ ଅଧମ କଂସାସୁର ।
ନାଲି-ତ୍ରିକୋଣର ହତିଆର ଧରି ଠିଆ ଅପସଂସ୍କୃତି ।
ସାରାଦୁନିଆରେ 'ଦାଦାଗିରି' କରେ ଡଲାରର ଅଧିପତି ।
ନାରୀକୁ କରିଛି ପଣ୍ୟ, ତରୁଣ ହାତରେ ଦେଇଛି ସୁରା
ମନରେ ଦେଇଛି ହତାଶାର ଛାୟା, ହାତରେ ଦେଇଛି ଛୁରା ।
ଜୀବନେ ଦେଇଛି ଅଭାବ, ବେକାରୀ, ଦୁର୍ନୀତି, ରାହାଜାନୀ,
କାଲିର ସରଣୀ ଘନ-ଅନ୍ଧାର, ନାହିଁ ସଂଦେଶ, ବାଣୀ

୧ । ସୋଫିଆ : ଟଲଷ୍ଟୟଙ୍କ ସହଧର୍ମୀଣୀ, ୨ । ସକ୍ରେଟିସ୍‌ଙ୍କ ପତ୍ନୀ ।

ପଛକୁ ଚାହିଁଲେ ଇତିହାସ ଦିଶେ ରକ୍ତରେ ଜୁଡୁବୁଡୁ
ପାଦତଳ ମାଟି କାନ୍ଦେ ନୀରବେ କାହିଁ କେ ଆଦିମ କାଳୁଁ !
ମହାଭୂଗୋଳରେ ଆଜି ମାର୍କିନ-ଜୀବନ ଧାରାର ସୁଅ,
ପ୍ରତିଟି ଜାତୀୟ ଜୀବନେ ଜୀବନେ ଯନ୍ତ୍ରଣା ଦୁଃସହ ।

ମାତା-ଭଗିନୀର ଜାତି –
ଆଜି ଯେତେବେଳେ ଭୋଗ୍ୟପଣ୍ୟ, ମାନବିକ-ସଂସ୍କୃତି,
ଅସହାୟ ଆଉ ବିକଳ ଯେବେଳେ, ନାହିଁ ତାର ନିରାପତ୍ତା,
ଜ୍ଞାନୀ-ଗୁଣୀ ଦଳ ଘୋର ଦେବାଳିଆ, ବନ୍ଧ୍ୟା ତ ବିଦ୍‌ବତ୍ତା ।
ନାରୀ ଓ ପୁରୁଷ, ଯୁବକ-ଯୁବତୀ, ସମାଜ, କୃଷ୍ଟି, କଳା
କାବ୍ୟ ଓ କବି, ଲେଖକ, ଶିଳ୍ପୀ ସବୁ ଆଜି ଦିଗହରା ।
ଅପସଂସ୍କୃତି ବାହକ ହୋଇଛି ନାରୀ ଯୌବନ, ଦେହ,
ଇତିହାସ ଚକ ପଛକୁ ବୁଲୁଛି, ଭୀଷଣ ଅବକ୍ଷୟ ।

ଏଠି ପ୍ରେମ ନାହିଁ, ପ୍ରେମିକା ବି ନାହିଁ, ଅଛି କାମ, ସଂଭୋଗ
ସବୁ ରୋମାଞ୍ଚ ଆଜି ତ ନୀରବ ଆବେଗ ଓ ଭାବାବେଗ ।
ସମାଜ ଜୀବନ ପାଲଟିଛି ଆଜି ନୀତିର ଗଣିକାଳୟ,
ଲାମ୍ପଟ୍ୟର ପ୍ରବଳ ଆଦର, ପ୍ରେମର ତ ପରାଜୟ ।

ତିକ୍ତ ମୋ ଅନୁଭୂତି,
ସମନ୍ୱୟର ବିଧାୟିକା ନାରୀ ହେଲାନାହିଁ, ଦୁର୍ଗତି ।
ପରିସ୍ଥିତିର ଚାବୁକ୍ ପ୍ରହାରେ ନାରୀ ବଧୂ, ନାରୀ ଜାୟା,
ବିଷବାହୀ ସବୁ ମଧୁମକ୍ଷିକା, ହେଲେନି ପୁଣ୍ୟତୋୟା ।
ତେଣୁ ପ୍ରେମ ନାହିଁ, ପ୍ରତାରଣା ମୋର ହୋଇଛି ତ ପ୍ରାଣପ୍ରିୟା,
ଧୋକାବାଜୀ ମୋର ପ୍ରେମର ଫଲ୍‌ଗୁ, ବିଚ୍ଛେଦ ମୋର ଜାୟା ।
ଶଠତାଟା ମୋର ସାଥି-ସହୋଦର, ବଂଚନା ପରିବାର,
ଭଗ୍ନପ୍ରେମର ନଗ୍ନମୂରତୀ ଆରାଧ୍ୟା ଦେବୀ ମୋର ।
ପ୍ରତାରଣା ଯେଉଁ ନାରୀ ନକରୁଛି, ନାମ ତାର "ବିସ୍ମିତା"
"ନାରୀ" ନାମେ ନୁହେଁ ମୋ ପାଖରେ ଗଣା, ଧିକ୍ ତାର ଜୀବନଟା !
ଫିସ୍ ନେଇ ଯିଏ କିସ୍ ଦେଲା ନହିଁ ନାମ ତାର 'ସାମୟିକା'
ମିସ୍ ହେଉ ସିଏ ଅଥବା ମିସେସ୍ ହେବା ଚାହି ମରୀଚିକା ।

ହୃଦୟ-ଫୃଦୟ ଲୋଡ଼ାନାହିଁ ମୋର, ଲୋଡ଼ା ଏକ ହୃତ୍‌ପିଣ୍ଡ,
ଆବେଗ-ଫାବେଗ ସବୁ ବାଜେକଥା, ମୁଁ ବୃଷଭ, ମୁହିଁ ଷଣ୍ଢ ।
ଦାୟିତ୍ୱହୀନ, ନାହିଁ ଦାୟିତ୍ୱ, ପରିବାର, ପିଲାଛୁଆ –
ଥିଲେବି ତାଙ୍କ ଭରଣପୋଷଣ ମୋତେ ହୋଇନାହିଁ ଦିଆ ।
ନିଜ ଦାୟିତ୍ୱ ମୋ ନିଜ ଉପରେ, ପ୍ରେମ ନୁହେଁ, ସଂଭୋଗ
ମୋହରି ବିଧାତା ମୋତେ ଶିଖାଇଛି, ନାହିଁ କିଛି ଭାବାବେଗ ।

ସହି ସହି କବି ବଞ୍ଚନା, ପ୍ରତାରଣା,
ସହି ସହି ବହୁ ଶଠତା, ଛଳନା, ଶୁଝିବାକୁ ତାର ଦେଣା,
ପ୍ରତାରଣାକୁ ମୁଁ ଶେଷରେ ପାଇଛି ଭଲ,
ସେପାଇଁ ଫୁଟିଛି ହୃଦ-ହ୍ରଦେ ମୋର ଶଠତାର ଶତଦଳ ।
ପ୍ରେମିକା ଦଳକୁ କବି ମୁଁ ଦେଇଛି ମୋହରି ମୂଳକେ ଫାଶୀ,
ଗର୍ଜି ମରୁନି ଆଉ ମୁଁ ସାଗର, ଥିର ମୋର ଜଳରାଶି ।
ଦୂରଗଗନର ଏ ଯେ ଚନ୍ଦ୍ରମା, ତାହାରି ଆକର୍ଷଣ –
ଆକର୍ଷିତ ତ କରୁନାହିଁ ମୋତେ, ମୋ ପୁରେ ତା ଆଗମନ –
କେବେ ସମ୍ଭବ ହେବନାହିଁ ଜାଣେ, ଏକଥା ଜାଣିଲା ପରେ,
ସୁଦୂରିକାକୁ ମୁଁ ବିଦାୟ ଦେଇଛି, ଅପ୍ରେମ ଆସି ମୋରେ –
ଦେଇଅଛି ତାର ଭୀମ-ଚୁମ୍ବନ ସାମୟିକା ସୁନ୍ଦରୀ,
ପ୍ରାକ୍-ସଂଭୋଗ କାଳେ ପ୍ରିୟତମା "ତମେ କେତେ ଭଲ" ବୋଲି –
କହିଲେ ବି ମୋତେ, ସୃଷ୍ଟି ହୋଇନି ମୋ ଭିତରେ ଆଲୋଡ଼ନ,
ସେଇଟା କେବଳ ଦେହଜ କାମନା, ଉତ୍ତାପ, ନୁହେଁ ପ୍ରେମ ।

କରିବାକୁ ପ୍ରତାରଣା –
ଯେ ନାରୀ ଆସିବ ମୋର ପରିଧିକୁ ତାକୁ ମୁହିଁ କବି ସିନା –
ପ୍ରତାରିତ କରି, ଦେବି ତା ଗଳାରେ ଛଳନାର ଜୟମାଳା,
ପ୍ରତାରିତ ଆଉ ପ୍ରତାରକ ମିଶି ଯତିପାତ ହେବ ପରା !
ମୁଁ ତାକୁ ଠକିବି, ସେ ମୋତେ ଠକିବ, ଠକାଠକି ଆମ ପ୍ରେମ,
'ନିରୋଧ' ଯୁଗରେ ନାରୀ ନିର୍ଭୀକା, "ସତୀ ଶିରୋମଣି" ନାମ ।
ମୁଁ ବି ଉତ୍‌କଟ "ଚରିତ୍ରବାନ", ଚେତନଶୀଳ ମୁଁ ପଶୁ,
ନୀତି, ଆଦର୍ଶ, ନୈତିକତା ମୋ ମୂଲ୍ୟବୋଧଟା ଖାସୁ ।

ଆସ ଅପ୍ରେମମୟି !

ତମେ ସବୁ ମୋର ଶୟନର ସାଥି, ସକାଳକୁ କେହିନାହିଁ ।
ଚଟୁ ମୋ ଆଇଁଷ, ବେଣ୍ଟଟା ତାର ପୁରାପୁରି ନିରାମୀଷ,
ଦ୍ୱିଧାବିଭକ୍ତ ମଣିଷ ମୁଁ ଜଣେ, ଛଦ୍ମତା ମୋର ବେଶ ।
ଏ ବେଶଟା କେବେ ନଥିଲା ତ ମୋର, ମୋତେ ଆଣି ''ଉପହା
ଦେଇତଛନ୍ତି ମିସ୍-ମରୀଚିକା ବାରବାର ଲଗାତର ।
ପ୍ରେମିକ କବି ମୁଁ ମାଗିଥିଲି ପ୍ରେମ, ପ୍ରମିକାତ ଚମ୍ପଟ –
ଦେଲା ପରେ ହେଲି 'କଂଫଟ୍' ପ୍ରେମୀ, ବାମାଚାରୀ, ଲଂପଟ ।
ଭିତରେ ଭିତରେ ଲାଂପଟ୍ୟକୁ ଏତେ ପରିମାଣେ ଭଲ –
ପାଆନ୍ତି ବୋଲି ଜାଣି ମୁଁ ନଥିଲି ଯୁବତୀ ଓ ନାରୀକୁଳ !

ଲମ୍ପଟ ହେବାପରେ,

ଚମ୍ପଟ ଦେଇଥିବା ନାରୀକୁଳ ଫେରି ଆସି ମୋର କୋଳେ –
''ତମେ ସୁପୁରୁଷ, ଜାଣି ମୁଁ ନ ଥିଲି, ତମେ ମୋର ଚିରପ୍ରିୟ
ପାଖେ ରହିବିନି, ଯିବି-ଆସୁଥିବି, ଯାହା ଦବାକଥା ଦିଅ !''
ଏଇତ ପ୍ରେମର ହେଲା ହାଲ୍‌ଚାଲ୍, କାମର ବୃନ୍ଦାବନ
ଜୟ ଧନବାଦ, ଜୟ ଆମେରିକା, ଜୟ ଜୟ ମାର୍କିନ !
ଜାତିସଂଘରେ ଝାଞ୍ଜ ବଜାଏ ବାଞ୍ଛର ଦଳ ବସି,
ଇଙ୍ଗ୍-ମାର୍କିନ-ଫରାସୀ ପ୍ରେମର ଯେତେ ସବୁ ବଦ୍‌ମାସୀ ।
ଖୋଲା ଖୋଲି କହେ : ସତୀ ଓ ଅସତୀ ଆଗେ ଥିଲେ, ଆଜି ନାହିଁ,
ଭଙ୍ଗ ଅମଳ-କୁସଂସ୍କାର ସେ ଆଧୁନିକ ଯୁଗ ପାଇଁ ।
ନାରୀ ଯେ ଅସତୀ, କାହିଁ ତା ପ୍ରମାଣ ? ହସି ଉଠେ ''କଣ୍ଡମ''
ଆକାଶବାଣୀ ଓ ଟି. ଭି. ପରଦାରେ ବଟିକା ବିଜ୍ଞାପନ :
ପ୍ରତିଦିନ ଖାଅ ଗୋଟିଏ ବଟିକା, ସୁରୁ କର ଭୀମରତି,
ଆଧୁନିକ କବି ଜାଣେନା କଅଣ ଛନ୍ଦ, ଯମକ, ଯତି ।

ଦୁଷ୍ଟଗ୍ରହର ଶିଖା,

ଆଉ ସନ୍ଦେହ କରୁନି ତମକୁ, ଶୁଣ ଆଗୋ ପ୍ରତାରିକା !
ତମେ ପିଶାଚିନୀ, ମୁହିଁ ତ ପିଶାଚ, ପୈଶାଚିକତା, ଆମ
ଦୁଇ ଚରିତ୍ର ଆଜି ଏକାକାର, ପୈଶାଚିକ ଏ ପ୍ରେମ –

କରୁ ମଣିଷକୁ ରସାତଳଗାମୀ, ଅଧିକ ନରକ ଗତି,
ଜୀବନ ହରାଉ ଚିରକାଳ ଲାଗି ଛନ୍ଦ, ଯମକ, ଯତି ।
ଅବିଶ୍ୱାସର ଧୂମକୁଣ୍ଡଳି, ମନେ ମନେ ଧୂମକେତୁ,
ହିଂସ୍ର ପଶୁର ବିଷ-ନିଃଶ୍ୱାସେ ଧରଣୀ ତଳର ଧାତୁ –
ତରଳି ତରଳି ବିଦାରଣ କରୁ ଧରଣୀର ମୃତ୍ତିକା,
ଶ୍ୟାମଳଗ୍ରହକୁ ଗ୍ରାସିଅଛି ଅପସଂସ୍କୃତି ବିଭୀଷିକା ।

ନାରୀ, ତମେ ସବୁ କରିଅଛ ମୋତେ ତାହାରି ଅଗ୍ରଦୂତ
ଚାଲିଛି ଆଗକୁ ନୀରବରେ ଗାଇ ଏକାକୀତ୍ୱର ଗୀତ ।
ତମ ସନ୍ଧୁରିକୁ ସାଥିରେ ମୁଁ ନେବି କାମନାର ମହାରାଣୀ,
ତମରି ସେ ଯେଉଁ ଶିଶୁଚନ୍ଦ୍ରର ବକ୍ର ଭେଙ୍ଗାଲ, ଠାଣି,
ହେ ଗଜଗମନା, ତମରି ଦେହଜ କାମନା, ଯାନ୍ତ୍ରିକତା,
ସବୁକୁ କରିବି ମୁଁ ମୋର ପାଥେୟ, ଶୁଣିବିନି-କାରକଥା ।
ଗୃହ ଅଙ୍ଗନୁ ଟାଣିନେବି ମୁହଁ ତମକୁ ତ ଶଇତାନ,
ବିଭତ୍ସତାର ନରକର ପଥେ ରଚିବି ମୋ ଅଭିଯାନ ।

ରକ୍ତ, ମାଂସ, ପୂଯର ଆରତୀ ଦେଇ
ସେଇଠି ପୂଜିବି ତମକୁ ମୁଁ କବି ହେ ନାରୀ ଛଳନାମୟି !



ର.କା.
୧୩ ମାର୍ଚ୍ଚ, ୯୭
ସକାଳ

# ଟା... ଟା...

ବାଡ଼ ହୋଇ ଗୋରୁ ସବୁ କରି ଦେଲା ସଫା
କାହିଁକି ରୋଇବି ନୂଆ ଫସଲର ଚାରା ?
ଅପସଂସ୍କୃତି ଛଡ଼ାଏ ପିଠୁରୁ ଚୋପା
ଦେହରେ ପ୍ରବଳ ବୟସ-ପାଷାଣ ଭାରା ।

ଜୀବନ ତମାମ ଲେଖି ଲେଖି, ପଢ଼ି ପଢ଼ି
ଆଖି ଦୁଇଟାକୁ ଆଉ ଦିଶୁନାହିଁ ଭଲ,
ଘନୀଭୂତ ମେଘ, ବିଜୁଳି ଓ ଘଡ଼ଘଡ଼ି
ଚିକିଟା ହେଉଛି ଅଧିକ ଅଂଧକାର ।

ଦୂରେ ରହିଲାଣି ଯଉବନ-ବନସୀମା
ଅପରାହ୍ନର ଆକାଶ ତଳେ ମୁଁ ବସି,
ପରିଶୋଧ କରେ ଜନ୍ମପାପର ଦେଣା
ଆସିଥିଲେ ଯିଏ, ସବୁ ତ ଗଲେଣି ଖସି ।

'ଏକ'ରୁ 'ଅନେକ' ହେବା ମୋ ବିରାଟ ଭୁଲ୍
'ଅନେକ'ହିଁ ମୋର ଜୀବନରେ ଯନ୍ତ୍ରଣା,
ବଂଶୀରେ ମୋର ଧରି ଅନେକର ସୁର୍
ଆପଣାକୁ ଆପେ କରିଅଛି ପ୍ରତାରଣା ।

ହୃଦୟେ ଦହନ, କ୍ଳମାନ-ମନ, ଦେହ
ଜଣେ ହେଲେ କେହି ନାହିଁ ଆପଣାର ଲୋକ୍,
ଜୀବନଟା ଆଜି ଗୁରୁଭାର, ଦୁଃସହ
ମୁଁ ସେହି ଆଦମ୍, ମନେ ମୋ ଆଦିମ-ଶୋକ ।

ପ୍ରେମ ଆସିଥିଲା ଭୀମ-କଷାଘାତ ନେଇ
''ବନ୍ଧୁ'' ଆସିଲା ପ୍ରତାରିତ କରିବାକୁ,
ପ୍ରେମିକା ଆସିଲା ସୁଖ ସମ୍ଭୋଗ ପାଇଁ
ଦେଖା ଦେଇଗଲେ ବହୁ ଆତ୍ମୀୟ-ଡ଼ାକୁ ।

ଆନ୍ତରିକତା, ହୃଦୟ, ସୋହାଗ, ପ୍ରୀତି
ତ୍ୟାଗ, ତପସ୍ୟା, ସାଧନା ଓ ଆରାଧନା,
ସବୁ ତ ଲୁଟିଛି ସ୍ୱାର୍ଥର ବଜ୍ଜାତୀ
କରଜ ନକରି ଶୁଝି ମୁଁ ଚାଲିଛି ଦେଣା ।

ଆପଣାର ବୋଲି ଅଛି ତ ମଣାଣି ମାଟି
ଅଛି ବିନିଦ୍ର ରାତିର ଦୀର୍ଘଶ୍ୱାସ,
ରହିଛି କ୍ଲାନ୍ତ, ଯାଯାବର ପାଦ ଦି'ଟି
ଅଛି ରୋଗ, ଶୋକ ଅଛି ପୁଣି ଉପବାସ ।

ସଞ୍ଜ ହେବାକୁ ତଥାପି ବହୁତ ଡ଼େରି
ସେତେବେଳେ ଯାଏଁ ଚାଲିବାକୁ ହେବ ମୋତେ,
ନିଜଛଡ଼ା ମୁହିଁ କାହାକୁ ସଲାମ୍ କରି –
ଶିଖିନାହିଁ ମୋର ଦୀର୍ଘ ଜୀବନ ପଥେ ।

ପଣ୍ୟପ୍ରେମର ମୁହଁକୁ ପକାଇ ଛେପ
ଫୁଲକୁ ଛିଡ଼ାଇ, ଦଳି ଅଭିଜ୍ଞ ପାଦେ,
ଦୁନିଆର ସାମାଜିକତା-ଅନ୍ଧକୂପ –
ଅତିକ୍ରମି ମୁଁ ମରଣର ସରହଦେ –

ନିର୍ଭୀକେ ଯାଇ ହୋଇବାକୁ କବି ଠିଆ
ହିମ୍ମତ ମୋର କଢ଼ାଇ ଦେଉଛି ବାଟ,
ହରାଇବା ପାଇଁ କିଛି ତ ନାହିଁ ମୋ ଆହା
କାହାରି ସାଥିରେ ଆଉ ମୋ ହେବନି ଭେଟ ।



ର.କା.
୧୮ ନଭେମ୍ବର ୧୯୯୨
ମଧ୍ୟରାତ୍ରି

# ହେ ଭାରତ !

ରକ୍ତସ୍ନାତ ହେ ଭାରତ, ବିକ୍ଷୁବ୍ଧ ଭାରତ !
ହିମାଳୟୁଁ କୁମାରିକା ଭ୍ରାତୃଘାତୀ-ଦଂଗାରେ ଆରତ ।
ହେ ବୃହତ୍ କାଚଘର, ରଣଭାରେ ବକ୍ର ଧନୁବତ୍,
'ପୂର୍ଣ୍ଣକ୍ରାନ୍ତି' 'ବିଂଶସୂତ୍ରୀ', 'ରାମରାଜ୍ୟ' ଖାଲି ପୋଥିଗତ ।
'ରାମ' ନାହିଁ, 'ରାଜ୍ୟ' ନାହିଁ, ସାଇନ୍‌ବୋର୍ଡ଼ ଝୁଲଇ ନୀରବେ,
ବର୍ଦ୍ଧମାନ ବେକାରୀ ଓ କରଭାର ହାହାକାର ରବେ,
ଶୋଷଣ କଷଣ, ରୋଗ, ଅତ୍ୟାଚାର ଫୁଲାଏ ଉଦର
ଭୀତତ୍ରସ୍ତ ନିରୁପାୟ ହେ ଭାରତ, ଆହେ କାଚଘର !

ମନେ ମନେ ଅସଦ୍‌ଭାବ
ଅବିଶ୍ୱାସ, ସଂଦେହର ଘାଟି,
ଅଶିକ୍ଷା, କୁଶିକ୍ଷା ଆଉ
ଅପଶିକ୍ଷା, ଯାନ୍ତ୍ରିକତା ଖଟି –
ଜୀବନେ ଜାଆଁଳା ଭାଇ
ହୋଇଲାଣି ଶଠତା, ଛଳନା,
ହୃଦ୍ୟତା କରୁଛି ନିତି ଆତ୍ମହତ୍ୟା
ଆୟୁଷ୍ମାନ ହୁଏ ପ୍ରବଂଚନା ।
ତାସ୍‌ର ପ୍ରାସାଦ ପରି ଭାଂଗିପଡ଼େ
ହୃଦ, ମନ, ଗୋଷ୍ଠୀ, ପରିବାର,
ବଢ଼େ ଜନବିଚ୍ଛିନ୍ନତା
ଦୁର୍ବଳର ପରେ ଅତ୍ୟାଚାର ।
ଜୀବନର ପଥ ଆଜି
ଡ଼ିପ, ଡାଲୁ, ଖାଲ ପୁଣି ଖମା,
ସବୁଟା ଜଟିଳ ଆଜି
କାର କିଛି ସରଳ ତର୍ଜମା –
ଅସମ୍ଭବ, ହେ ଭାରତ,
ଋଣଗ୍ରସ୍ତ ଖାତକ ଭାରତ !
ପଙ୍କିଳ, ଦୂଷିତ ସବୁ
କୃଷ୍ଟି, କଳା, ସଂସ୍କୃତି, ସଂଗୀତ ।

ଡଲାର୍-ବାଦଶା କୋଳେ
ରତିନଗ୍ନା ରୁବଲ୍-ବେଗମ୍
ଦୁର୍ଭିକ୍ଷର ମଧୁଶଯ୍ୟା
ହୁଇସ୍କି ଆଉ ସରାପ୍‌ର ଢାମ୍,
ପ୍ରଣୟ ତ ସିଫ୍‌ଲିଟିକ୍
ପ୍ରିୟତମା ଅବାଧ ଗାମିନୀ;
କାରଣ ସେ ବିଜ୍ଞାନିକା
ହାଇଡ୍ରୋଜେନା ପୁଣି ନିରୋଧିନୀ ।

ମୁଣ୍ଡ ଆଡୁ ପଚିଯାଏ ମାଛପରି ଜାତୀୟ ଜୀବନ,
ଜଣେ ଦୁର୍ଯ୍ୟୋଧନ ହେଲେ ଆରଟି ତା ଭାଇ ଦୁଃଶାସନ ।

ଆମେରିକା-ରୁସ୍,
ଶୀତଳ ଯୁଦ୍ଧର ସ୍ରଷ୍ଟା ମୃତ୍ୟୁଦୂତ, ଦୁର୍ନୀତି ଓ ଘୁଷ୍ ।
ଧରଣୀକୁ 'ଉପହାର' ଦେବାପାଇଁ ପରମାଣୁ ବୋମା,
ଦୁର୍ଭିକ୍ଷ, ଅଭାବ, କ୍ଷୁଧା ବୀଜ ପୁଣି ନୂଆ ହିରୋସିମା –
ସୃଜିବାକୁ, କୁମ୍ଭୀରାଶ୍ରୁ ଦିବାରାତ୍ରି ନିଗାଡ଼ି ନୟନୁ,
ମାଡ଼ଖାଇ, ପ୍ରାଣ ନେଇ ଭିଏତ୍‌ନାମ୍ ଘନ ବେତବଣୁ –
ପଳାଇ ଆସିଲା ପରେ ନୂଆ 'ଫନ୍ଦି' 'ବିଶ୍ୱଶାନ୍ତି' କଥା !
ଜଳେ ଆଫ୍‌ଗାନିସ୍ତାନେ ପ୍ରତିରୋଧ, ପୁନଶ୍ଚ ହୀନସ୍ତା ।

ଜଳୁଛି ପୃଥିବୀ,
ମଣିଷ ଟେକୁଛି ମଥା ମଶାଲର ସମ ଜଳିନିଭି ।

ହେ ସୁପ୍ତ ଭାରତ !
ହେ ଅଭାବୀ, ଅନ୍ନକ୍ଲିଷ୍ଟ
ଋଣଗ୍ରସ୍ତ, ହେ ସ୍ତବ୍‌ଧ, ଆରତ !
କହିଛି ମଇନିହାନ୍ (୧) –
ପି. ଏଲ୍. ଚାରିଶ ଅଶୀରେ,
ଯେତିକି ଗହମ ତମେ
ଖାଇଅଛ ଭାରତ ବାସୀରେ !

୧ । ମଇନିହାନ୍ : ଭାରତରେ ଥିବା ଯୁକ୍ତରାଷ୍ଟ୍ର ଆମେରିକାର ପୂର୍ବତନ ରାଷ୍ଟ୍ରଦୂତ ।

ଶୁଝିକି ପାରିବ ତାକୁ ?
ଦେଇଛି ଯା ବିଶ୍ୱବ୍ୟାଙ୍କ ଋଣ,
ଜନ୍ମିନାହିଁ ଯେଉଁ ଶିଶୁ
ମାତାଗର୍ଭେ ଅଛି ଯେଉଁ ଭ୍ରୁଣ,
ପଇଠ କରିବ ସିଏ
ମୂଳ ନୁହେଁ, ସୁଧଖାଲି ସୁଧ,
ପ୍ରତି ମୁଣ୍ଡ ପିଛା ପଡ଼େ
ତିନିଶହ ଟଙ୍କାର ବରାଦ ।

ବେଲୁ ବେଲ ମୁଦ୍ରାସ୍ଫୀତି, ଟଙ୍କାଟା ତ ବାରଟି ପଇସା,
ମୋର ନୁହେଁ, ରିଜର୍ଭ୍‌ବ୍ୟାଙ୍କ୍‌ର ଏହା ଅଟେ ଅଂକକଷା ।

ଯୌବନର ରକ୍ତଘୋଡ଼ା ପଥହୁଡ଼େ ବିକୃତି - ଅଂଧାରେ,
ଚାଲିଅଛ ହେ ଭାରତ ଅବିରତ ଉଡ଼ା ଓ ଚାନ୍ଦାରେ !
ସ୍ତବ୍‌ଧ ସବୁ ମୂଲ୍ୟବୋଧ, ଆଦର୍ଶର ଅଗ୍ନିମାନ୍ଦ୍ୟ ରୋଗ
ଆଗାମୀର ସମ୍ଭାବନା, ଯେତେସବୁ ସୃଜନର ଯୋଗ –
ନୈତିକ-ଗଳିତ କୁଷ୍ଠ ଚଲୁ କରେ – ଆତ୍ମୀକି-ପଙ୍ଗୁତା,
ଫଣାତୋଳେ ସର୍ବନାଶ, ଅସଂଗତି, ମହା ବିଚ୍ଛନ୍ନତା ।
''ସଂହତି''ର ବେୟୋନେଟ୍, ''ଅହିଂସା''ର ତପ୍ତ ତାଜା ଗୁଳି
ନିର୍ବାଣର ପଥଯାତ୍ରୀ ଯେତେ ସବୁ ହତଭାଗ୍ୟ ବଳି ।
ସୂର୍ଯ୍ୟ ଆଜି ରାହୁଗ୍ରସ୍ତ, ମାନବିକ-ସଂସ୍କୃତି ବିପନ୍ନ,
ହେ ରୁଗ୍‌ଣ ଭାରତବର୍ଷ ପ୍ରେତାୟିତ ମହା ଶମଶାନ !

ହେ ଭାରତ ରାଜଭକ୍ତ
ସାବାଳକ କ୍ଷୁଧାର ହେ ପିତା !
ଉଠ, ଜାଗ, କଥାକୁହ,
ଆଖି ଖୋଲ, ଟୋକ ଥରେ ମଥା !
ଇଏତ ଜୀବନ ନୁହେଁ,
ନୁହେଁ ମୃତ୍ୟୁ, କରୁଣ ଦହନ,
ଗୋଟେ କିଛି ଘଟିଯାଉ
ଧ୍ୱଂସ ଅବା ନୂତନ ସୃଜନ ।



ର.କା.
୧୬ ଅକ୍ଟୋବର, ୧୯୮୬
ମଧ୍ୟରାତ୍ରି

# ବିଷବୃକ୍ଷ

ତମର ସେ ଅନ୍ଧ ସ୍ନେହ ପ୍ରେୟସୀ ଗାନ୍ଧାରି !
ତମକୁ ତ ହତ୍ୟାକଲା ଅବଶେଷେ ଯଥା ତରବାରୀ ।

ଅସହାୟେ ଅକାଳରେ ଝରାପତ୍ର ସମ,
ତମେ ତ ପଡ଼ିଲ ଝଡ଼ି, ଦେଖିଅଛି ମୋ ବେନିନୟନ ।

ଅପଦାର୍ଥ ଦଳ,
ତମରି ଦେହାନ୍ତ ପରେ ପୂର୍ବବତ୍ ଦୁଃଶାସନ ଖଳ,
ପ୍ରଗତିର ବିପରିତ କୂଳେ,
ମାନବିକ ସତ୍ତାକୁ ମୋ କ୍ରମାଗତ ବେତ୍ରାଘାତ କରେ ।
ଆର୍ତ୍ତନାଦ କରେ ମୋ ଭଦ୍ରତା,
ମୋ ବିପ୍ଳବୀ-ଭାବମୂର୍ତ୍ତୀ, କବିତ୍ୱ ମୋ ଉଗ୍ରନୈତିକତା –
ଦେଖେ ସଦା ତମେ ଥିବା ବେଳର ସେ ରକ୍ତିମ ଆନନ
ମରି ତ ପାରୁନି କବି, ଜୀଇବାର ନାହିଁ ପ୍ରୟୋଜନ ।

ନୀରବ ଦହନେ ଜଳେ ଜାଣେ ନାହିଁ ବାହାର ଦୁନିଆ,
ଭୟଙ୍କର ସରୀସୃପ ଗିଳେ ମୋତେ କରି ତାର ଆଁ ।

କ୍ଷୁଧା, କ୍ଳାନ୍ତି, ଅପମାନ, ନିଃସଂଗତା, ଗୁଣ୍ଡାମୀ, ଲୁଂଠନ
ସର୍ବନିମ୍ନ ପ୍ରଶାନ୍ତି ମୋ ଛିନ୍ନମୂଳ, ନେତ୍ର ନିଦ୍ରାହୀନ ।

ମୋ ନିବାସେ ମୁଁ ପ୍ରବାସୀ, ସବୁ ମୋର ଆୟତ୍ତ ବାହାରେ
ମୋ ପୀଡ଼ିତ-ଭବିଷ୍ୟତ ସକରୁଣେ ଆର୍ତ୍ତନାଦ କରେ ।

ଦୁଃସହ ଏ ଏକାକୀତ୍ୱ ଛିନ୍ନକରେ ମୋର ସ୍ନାୟୁଶିରା,
ଆତ୍ମା ମୋର ରକ୍ତସ୍ନାତ, ଅଦ୍‌ଭୁତ ଏ ଏକ ବଂଦୀଶାଳା ।
ଏଠି ମୁଁ ବାସନମାଜେ ରାନ୍ଧେ ପୁଣି ଅନ୍ନ ଓ ବ୍ୟଞ୍ଜନ,
ଏ ବୟସେ ଦେହଶ୍ରମ, ଅଛି ପୁଣି ଅର୍ଥ ଉପାର୍ଜନ ।

ନିଜେ ରହି ଉପବାସେ ଯାହାଙ୍କୁ ମୁଁ ଯୋଗାଏ ଆହାର,
ଯାହାଙ୍କୁ ଆଲୋକ ଦିଏ ନିଜେ ଭୋଗି ଘନ ଅନ୍ଧକାର,
ସେମାନଙ୍କ ନିର୍ଯ୍ୟାତନେ, ଅସମ୍ମାନେ ଆଉ ଅତ୍ୟାଚାରେ,
ପିଷ୍ଟ ହାୟ ଆତ୍ମା ମୋର ବେଳୁବେଳ ନୀରବ-ଚିତ୍‌କାରେ !

ଲୁହର ଦରିଆ ପୁଣି ବେଦନାର ମହାସୁନ୍ଧୁ ସହ –
କରେ ଭାବବିନିମୟ ସବୁ ଆଜି ଦୁଃସହ, ଦୁର୍ବହ ।
ପାରିଛି ମୁଁ ଜାଣି
ଘାତକର ପ୍ରାଣେ କେବେ ବାଜେ ନାହିଁ ନିହତର ବାଣୀ ।
ମୁକ୍ତି ମୋର କାମ୍ୟ ଆଜି, କାମ୍ୟ ପୁଣି ଶାନ୍ତି ଓ ବିଶ୍ରାମ,
ବହୁ ସ୍ୱପ୍ନ, ରାତିକମ୍, ବାକିଅଛି ବହୁ କାମଦାମ ।
କିପରି ସାରିବି ସବୁ, କେବେ ଅବା
ଅସଂସ୍କୃତି କରେ ଅଟ୍ଟହାସ,
ସ୍ଥିତି ମୋର ଟଳମଳ
ମୋର ବୀର୍ଯ୍ୟ, ମୋ ରକ୍ତର ଗୋପନ ସଂତ୍ରାସ –
ଧ୍ୱସ୍ତ କରେ ମୋ ପ୍ରତିଭା, ଅପବିତ୍ର କରେ ଯଜ୍ଞବେଦି,
ପିଙ୍ଗେ ଅସ୍ଥି, ନରମୁଣ୍ଡ, କଳୁଷିତ କରେ ଚଉହଦି ।
ପିତୃତ୍ୱ ଓ ପୌରୁଷକୁ ମାରେ ମୋର ନାତ୍,
ଲେଖେ ଅପସଂସ୍କୃତିର ଦୀର୍ଘ ଉପୋଦ୍‌ଘାତ ।
ଆଗୋ ପରଲୋକଗତା ପ୍ରିୟତମା
ତମରି ସେ ମାତୃତ୍ୱର ଅନ୍ଧ ସ୍ନେହ ତରୁ,
ଆଜି ସେ ବିଶାଳବାହୁ ମହୀରୁହ
ତାହାରି ଦୟାରୁ
ତମେ ସଖୀ ପରଲୋକେ
ଇହଲୋକେ ଜଳେ କବି ତବ,
ଏତ ସ୍ୱାହାହୀନ ନିଆଁ
ତା'ଭିତରେ ମୁଁ ଜୀବନ୍ତ ଶବ ।

ପରିବାର ଗଠନର ଭୁଲ୍,
କଲା ଆମ ଜୀବନକୁ ଛିନ୍‌ଛତ୍ର
ପୁଣି ହୁଲୁସ୍ଥୁଲ୍ ।
ସେ 'ଭୁଲ'ର ସଂଶୋଧନ
ହେଲା ତମ ମୃତ୍ୟୁର କାରଣ,
ସେ 'ଭୁଲ'ର ସଂଶୋଧନ
ହେବ ମୋର ସିନା ପଳାୟନ ।



ର.କା.
୨୧ ଏପ୍ରିଲ, ୧୯୮୯
ରାତି ୯ଟା

# ଆଜିତ ମୋର ଜନ୍ମଦିନ

ଆଜି ତ ମୋର ଜନ୍ମଦିନ, ମରଣଦୂରେ ଠାରୁଛି ହାତ
କ୍ଳାନ୍ତ ଦେହ, ଶ୍ରାନ୍ତମନ, ପଡ଼ିନି ପେଟେ ଆଜି ବି ଭାତ ।
ତିନୋଟି ରାତି ଗଲାଣି ବିତି, ନିଦ୍ରାଦେବୀ ଆସିନି ପାଖେ,
ଶାନ୍ତି ଘୋର ଶତ୍ରୁ ମୋର, ଅଶାନ୍ତିଟା ଜୀବନ-ବାଁକେ ।
ତାହାରି ଜ୍ୱାଳା, ତାହାରି ମାଳା ଉଦୟଠାରୁ ଅସ୍ତଯାଏଁ –
ହୃଦୟେ ବହି ବଞ୍ଚେ ମୁହିଁ, ଖବର କେହି ନାହିଁ ତ ପାଏ ।

ଜୀବନ ସାରା ଲୁଣ୍ଠିତ ମୁଁ, ସାରଲ୍ୟ ମୋ ହତ୍ୟାକାରୀ,
ହୃଦ୍ୟତା ମୋ ଯନ୍ତ୍ରଣା ତ, ଆତ୍ମୀୟ ମୋ ଅତ୍ୟାଚାରୀ ।
ସଂଗହୀନ ପାନ୍ଥଜଣେ ସତ୍ୟସେବୀ କାବ୍ୟକାର
ପ୍ରଦୀପ ସମ ଜଳିତ ଗଲି, ରହିଲା ପଡ଼ି ପାଉଁଶ ମୋର ।
ଆଲୋକ ଦେଇ ଅନ୍ଧକାରେ କଟାଇ ଦେଲି ଜୀବନସାରା
ମଣିଷପାଇଁ ଲଢ଼ି ମୁଁ ଗଲି, ଲଢ଼ାଇ ମୋର ରକ୍ତଝରା ।
ବକ୍ଷେବହି ଆଦିମ-କ୍ଷତ, ଶୂନ୍ୟତାର ପାତ୍ର ଧରି –
ଆସିଲି ଚାଲି ଜୀବନପଥେ ବିଦ୍ରୋହୀ ମୁଁ ଘୂର୍ଣ୍ଣି ଭଳି ।
ଅସୁନ୍ଦର, ଅକଲ୍ୟାଣ, ଅସତ୍ୟକୁ କରିନି କ୍ଷମା
ହରାଇବାର ଦୀକ୍ଷାନେଇ ପଛକୁ ବୁଲି ଚାହିଁନି ଜମା ।

ଆଜି ତ ମୋର ଜନ୍ମଦିନ, ଶୂନ୍ୟଘରେ, ଶୂନ୍ୟମନେ –
ବସିଛି କବି, କେହି ତ ନାହିଁ, ନିସଂଗ ମୋ ନିବାସ କୋଣେ ।
ଚାହିଁଛି ମୋତେ ଶୂନ୍ୟଶେଯ, ଶୂନ୍ୟ ମୋର ହୃଦୟ-ନଦୀ,
ନିର୍ଜଳା ସେ, ନାହିଁ ତ ଜଳ, ଶୁଷ୍କ ଶେଯ, ଶୂନ୍ୟବେଦି ।

ଆଜିତ ମୋର ଜନ୍ମଦିନ, ପଞ୍ଚମୀର ଚାନ୍ଦଆଖି –
ଲୁହରେ ଭରା ଉର୍ଦ୍ଧନଭେ, ଚାହିଁଛି ମୋତେ ଚନ୍ଦ୍ରମୁଖୀ ।
ଆଉ ତ କେହି ଦେଖୁନି ମୋତେ, ଦେଖୁଛି ସିନା ନିର୍ଜନତା
ଆଜିର ଦିନେ ଦୁଃଖଦାୟୀ-ଅତୀତ ତାର କହୁଛି କଥା ।

ଶିକ୍ଷା ତାର, ଦୀକ୍ଷା ତାର, ଯନ୍ତ୍ରଣା ତା ସବୁଟା ଅବହେଳା
ଅତୀତ ସିନା ମରମୀ ମୋର, ଅତୀତ ପାଠଶାଳା ।
ତାକୁ ମୁଁ ବସି ପ୍ରଣାମ କରେ କ୍ଳାନ୍ତ ପଥଚାରୀ ।
ନଥିଲେ ମୋର କେହିତ କେବେ, ଥିଲେ ଯେ ଗଲେ ଚାଲି ।
ଦେଇ ତ ଗଲେ ''ପୁରସ୍କାର'' ବେଦନା, ବ୍ୟଥା ଯେତେ
ସେଇତ ମୋର ''ପାଥେୟ'' ଆଜି ଅସ୍ତାଚଳ ପଥେ ।
ସମୟ-କଟାମୁଣ୍ଡ ଛିଡ଼େ, ଘଣ୍ଟାଚାଲେ ବିରାମହୀନ,
ସରସ୍ୱତୀ ପୂଜା ତ ଆଜି, ଆଜି ତ ମୋର ଜନ୍ମଦିନ ।



ର.କା.
୨୪ ଜାନୁଆରୀ, ୧୯୯୬
ବସନ୍ତ ପଞ୍ଚମୀ । (ରାତ୍ରି ୧୦ଟା)

# ଭୋଟ୍-ରାମଧୁନ୍

ରାଜନୀତିରେ
'ପଲ୍‌ଟିସ୍' ପଶିଲା ପରି
ଛାତ୍ର ଆନ୍ଦୋଳନେ
ପଶିଲେ 'ଷ୍ଟୁଡ଼େଣ୍ଟ୍',
ସେଥିପାଇଁ ବଢେ ଅସନ୍ତୋଷ
ଆଉ
ଆକ୍‌ସିଡ଼େଣ୍ଟ
କହୁଛନ୍ତି ଲୋକ ।

ସାହିତ୍ୟରେ ପଶିବାରୁ 'ଲିଟ୍ରେଚର୍'
ଘଟେ ଅଘଟଣ,
କହଇ ଲେଖକ ।।

ବନ୍ୟାଜଳେ ପଶିଆସେ 'ଫ୍ଲଡ୍',
ଜନତା ଭିତରେ
ପଶନ୍ତି 'ପବ୍ଲିକ୍',
ସାଧାରଣତନ୍ତ୍ର ମଧ୍ୟେ
ପଶେ 'ରିପବ୍‌ଲିକ୍' ।

ଦେଶସାରା ପୋଲ,
ଅଭାବ,
ବେକାରୀ
ଆଉ
ଘୁଷଖୋରୀ
ଛିଡ଼ିଲାଣି ପାଲ,
ବୁଡ଼ିଯାଏ ନାଆ
ସତ୍ୟ ହୁଏ 'ରାମନାମ'
ଭୋଟ୍ ଏକା ସାହା
ଦିଅ ହରିବୋଲ,
ଦେଶସାରା ପୋଲ ।।

କଷ ଅଙ୍କ
мିଳୁପଛେ ଶୂନ,
ଚୁପ୍‌କର,
ଭାଙ୍ଗିଯିବ ପ୍ରେମ !
ଜାଣ ନାହିଁ ?
ଚାଲେ 'ହନିମୁନ'
ଦୁର୍ନୀତିର ମଧୁଶଯ୍ୟା
ରତିନଗ୍ନା ଗଣିକା ସହିତ
ପ୍ରମତ୍ତ ଦଲାଲ୍,
ଏହି ହେଲା ସିନା ହାଲ୍‌ଚାଲ୍ ।।

ବିରାଟ ଏ ଦେଶ
ଆମେରିକା, ରୁଷିଆର ନିଶ ।
ଏ ମୁଣ୍ଡରୁ ସେମୁଣ୍ଡ
ଦଣ୍ଡ ମାରେ ଭଣ୍ଡ ।
ଚାଲିଛି ଶାସନ
ମୋବିଲ୍, ଜଡାରେ
ଚାନ୍ଦା ଓ ଭଡ଼ାରେ
ଲାଠି ଓ ତଡ଼ାରେ ।

ଭୋ, ଭୋ, ଜନତା ମହାନ୍ !
ଦି' ଗୋଡିଆ ଯେତେ ଜନାର୍ଦ୍ଦନ
ଦିଅ ସର୍ବେ ହରିବୋଲ
ଗାଅ ଆଜି ଭୋଟ୍-ରାମଧୁନ୍ !



ର.କା.
୯ ଅଗଷ୍ଟ ୮୪
ଭୁବନେଶ୍ୱର

# ତମେ ଯଦି ଜୀଇଥାନ୍ତ...

ତମେ ଯଦି ଜୀଇଥାନ୍ତ ଡାର୍‌ଉଇନ୍ ହେ ଜୀବ ବିଜ୍ଞାନୀ,
ତମକୁ ପଚାରିଥାନ୍ତି ପ୍ରଶ୍ନ ଏକ ମୁଁ ଉନ୍ନତ ପ୍ରାଣୀ ।
ଲେଖି ଦେଇ ତମେ ଗଲ କହି;
ମଣିଷର ପୂର୍ବସୂରୀ ବାନରର ଛଡ଼ା କେହି ନାହିଁ ।
ବଞ୍ଚିବାକୁ ଯେ ସମର୍ଥ, ସେ କେବଳ ବଞ୍ଚି ତ ରହିବ
ଛିତିପାଇଁ ଅଯୋଗ୍ୟ ଯେ ସେତ ନାଶ ଯିବ ।

ସାଂପ୍ରତିକ ବିଶ୍ୱ ଆଉ ତାର ଯେତେ ଜାତୀୟ ଜୀବନ,
ମାନବିକ-ମୂଲ୍ୟବୋଧ, କଳା, କୃଷ୍ଟି, ପ୍ରତିବଦ୍ଧ ପ୍ରାଣ,
ସଂସ୍କୃତି, ସାହିତ୍ୟ, କାବ୍ୟ ଧରଣୀର ସୁଦୀର୍ଘ ସଭ୍ୟତା,
ସବୁ ଆଜି ଭାଙ୍ଗିପଡ଼େ, ଅବକ୍ଷୟ ଆଉ ଅଶ୍ଳୀଳତା ।
ଅପ-ସଂସ୍କୃତିର ବିଷେ ବିଷାୟିତ ତନୁ-ମନ-ପ୍ରାଣ
ଧସିପଡ଼େ ଭବିଷ୍ୟତ, ହସିଉଠେ ନିଃସଙ୍ଗ ଶ୍ମଶାନ ।
ନାବ କି ବିଲୀନ ହେବ ? ସର୍ବନାଶ ପେଟେ ଆଜି ଭୋକ
ଏକି ଉତ୍ତରଣ କୁହ ? କେଉଁ ଦିଗେ ? ଆଗରେ ନରକ !
କାହାର 'ପ୍ରେରଣା' ଇଏ ? କାହାର ଏ ନଗ୍ନ ଶଇତାନୀ ?
ତମକୁ ଖୋଜୁଛି କବି ପଚାରିବି ହେ ଜୀବ ବିଜ୍ଞାନୀ !

ବସ୍ତୁର ବିସ୍ମୟକର ସର୍ବୋଚ୍ଚ ଯେ ସୃଷ୍ଟି, ଅବଦାନ,
ମଣିଷର ମସ୍ତିଷ୍କ ସେ, ତାକୁ ମୋର ନିୟୁତ ପ୍ରଣାମ ।
ସବୁକୁ ସୁନ୍ଦରମୟ ମଣିଷର ଶ୍ରମ ଆଉ ହାତ –
କରିଅଛି ଚିରକାଳ ଧରଣୀକୁ ମହିମାମଣ୍ଡିତ ।
ମଣିଷହିଁ ବିଶ୍ୱକର୍ମା, ସୁମହାନ ଶିଳ୍ପୀ, କଳାକାର,
ଆଜି ତାର ଏକି ଦଶା, କେଉଁ ଦିଗେ ଏ ଯାତ୍ରା ତାହାର ?
ବାନରରୁ ଯଦି ନର, ନରରୁ କି ପିଶାଚ୍ ସେ ହେବ ?
ଶବକୁ ଯେ ଚୋରି କରେ, ଲୁଚାଏତ ମିଳେନାହିଁ ଠାବ ।

ଆହେ ଡାର୍‌ଉଇନ୍,
ସଭ୍ୟତାର ରଙ୍ଗମଞ୍ଚେ
ନଇଁ ଆସେ କି ବିଭସ ସିନ୍ !

ମଣିଷକୁ "ମାସାଜିକ ପ୍ରାଣୀ",
କହିଥିଲେ ଆରିଷ୍ଟଟଲ୍; କିନ୍ତୁ ତାହା ସତ୍ୟ ତ ହେଲାନି !

ହୋଇଥିଲେ ତାହା,
ବନାନୀବିଭୂଷା ଏଇ ସସାଗରା ବିରାଟ ଦୁନିଆ –
ବିଦ୍ୱେଷରେ ରକ୍ତସ୍ନାତ, ଗୃହଯୁଦ୍ଧ, ଅସୂୟାର ଝଡ଼େ –
ହେଉ ତ ନ ଥାନ୍ତା ମୋଟେ ଆନ୍ଦୋଳିତ ମହାଶୂନ୍ୟ ମୋଡ଼େ ।
ଅସାମ୍ୟ, ଶୋଷଣ, ଦଙ୍ଗା, ରକ୍ତଗଙ୍ଗା, ବେଦନା-ବାରିଧି
ମାନବିକ-ମୂଲ୍ୟବୋଧ ଯେତେ ଯାହା ସବୁ ନିରବଧି
ସଧୀରେ ନିମଜ୍ଜମାନ ହୁଅନ୍ତାନି, ଥିଲେ ଅଂଗୀକାର,
ଶୁଭୁତ ନଥାନ୍ତା ମୋଟେ ଯାନ୍ତ୍ରିକତା-ଯନ୍ତ୍ରର ଘର୍ଘର ।

ଖଟିଖିଆ ପୁଣି ଲୁଟିଖିଆ,
ଦୁଇ ଶ୍ରେଣୀ ହାତାହାତି, ଦୁର୍ବଳକୁ ବଳଦର୍ପୀ ବାହା –
ପିଷ୍ଟ ତ କରନ୍ତା ନାହିଁ ଆସୁରିକ ଶକ୍ତି ଅଟ୍ଟହାସ,
ଚାରିଦିଗେ ଶୁଭନ୍ତାନି ଫଣିନୀର ବିଷାକ୍ତ-ନିଃଶ୍ୱାସ ।

"ମାସିଜିକ ପ୍ରାଣୀ" –
ମଣିଷ ତ ହେଲା ନାହିଁ, ହୋଇନାହିଁ, ହୋଇ ପାରିଲାନି ।
ସେଥିପାଇଁ ଦାୟୀ ପୁଞ୍ଜିବାଦ,
ମାନବ ସମାଜ ମଧ୍ୟେ ସେହିନିକେ ଶ୍ରେଣୀର ବିଭେଦ ।

ଦୁଃସମୟ ଜଠରରୁ
ମଣିଷକୁ ସୁସମୟ ପଥେ,
ମଣିଷହିଁ ନେବ ଦିନେ
ରକ୍ତଧ୍ୱଜ ବିପ୍ଳବର ରଥେ ।
ଶ୍ରେଣୀର ବିଲୁପ୍ତି ଘଟି
ରାଷ୍ଟ୍ର ସତ୍ତା ଲୋପହେବ ଦିନେ,
ମଣିଷ ତ ପହଞ୍ଚିବ
ଉଚ୍ଚତର ଚେତନା ସୋପାନେ ।

ମଣିଷହିଁ ମଣିଷର
ମୁକ୍ତିଦାତା, ଏ ଦ୍ୱନ୍ଦ୍ୱବିଜ୍ଞାନ,
ଏହା ସତ୍ୟ, ବାସ୍ତବତା
ବିପ୍ଳବର ଏହା ଅଭିଜ୍ଞାନ ।

ମଣିଷର ଚେତନାର ଫଣା,
ଶ୍ରେଣୀ-ଶୋଷଣର ଊର୍ଦ୍ଧ୍ୱେ ଦିନେଇ ଦିନେନା,
ଜାଳିଦେବ ଅମଙ୍ଗଳ, ଏ ପୃଥିବୀ ହେବ ଅକୌରବା,
ଦଳିତର ପଦାଘାତେ ଚୂର୍ଣ୍ଣ ହେବ ବିଶ୍ୱ କୁରୁସଭା ।
ମାନବସମାଜ ହେବ ଏକ ଜାତି, ଏକ ପରିବାର,
ବିଶ୍ୱ ହେବ ଏକରାଷ୍ଟ୍ର ମାନବର ମସ୍ତିଷ୍କ, ଶ୍ରମର –
ଜୟଗାନେ ମୁଖରିତ ହେବ ହେବ ଆକାଶ-ଅବନୀ
କିନ୍ତୁ ତା ହେବ ନି ବଳେ, ବିପ୍ଳବର ବିନା ଉଦ୍‌ବୋଧନୀ –
ନଶୁଭିଲେ ବୀଦଳିତ ମଣିଷର ହୃଦୟ ଗଭୀରେ,
ରୁଦ୍ଧଦ୍ୱାର ଖୋଲିବନି ଧକ୍କା ଆଉ ବିନା ଆଘାତରେ ।
ପ୍ରେମର ସଙ୍ଗୀତ ଗାନେ ବାତାୟନ ହୁଏନାହିଁ ମୁକ୍ତ,
ନୂଆ ଏକ ସମାଜର ଆଗମନେ କିଛି ତାଜା ରକ୍ତ –
ସ୍ରାବ ହୁଏ, ସୂର୍ଯ୍ୟୋଦୟ ପୂର୍ବରୁ ଆକାଶ –
ହୁଏ ସିନା ଲାଲେ ଲାଲ୍, ତ୍ୟାଗବିନା ଜାତି ଆଉ ଦେଶ,
ସଂଘାତ, ସଂଗ୍ରାମ ବିନା ଇତିହାସ ହୁଏ ନାହିଁ ଲେଖି
ତ୍ୟାଗ ବିନା ସାମାଜିକ ଜୀବନ ତ ହୁଏନାହିଁ ସୁଖୀ ।

ଏହା ସତ୍ୟ, ଏ ସତ୍ୟକୁ କୁରୁକ୍ଷେତ୍ର ସମର ପ୍ରାଙ୍ଗଣେ –
ବୁଝାଇଛି ଶ୍ରୀକୃଷ୍ଣ ତ ଅର୍ଜୁନକୁ ମନେ ଆଉ ପ୍ରାଣେ ।
ମଣିଷର ବିଶ୍ୱରୂପ କେତେ ପୂଜ୍ୟ, କେତେ ଯେ ମହାନ,
କେତେ ପୁଣି ପ୍ରାଣବନ୍ତ, ବଳଶାଳୀ, କେତେ ଯେ ଭୀଷଣ !

ଆଜି ବି ବିରାଜମାନ ଦୁର୍ଯ୍ୟୋଧନ ଆଧିପତ୍ୟବାଦ,
ଆଜି ବି ତ ଭୂଗୋଳର ଜନାରଣ୍ୟେ ନିଷ୍ଠୁର ଜଲ୍ଲାଦ,
ଯାଜ୍ଞସେନୀ-ଜାନୁଲୋଭୀ ଦୁଃଶାସନ ଜାରଜ ସନ୍ତାନ
ଧରଣୀର ଦେଶେ ଦେଶେ ଷ୍ଟେନ୍, ବ୍ରେନ୍, ବନ୍ଧୁକ, କମାଣ,

ସୁରା-ସାକୀ, ଉଡ଼ାଟିଆ, ଅର୍ଥ ଆଉ କାମର ବିକୃତି –
ସମସ୍ତ ସମ୍ଭାର ଧରି ମାଡ଼ିଚାଲେ ତା ଅପସଂସ୍କୃତି ।
ଏଥିରେ ବାଲ୍ମିକୀ କାନ୍ଦ , କାନ୍ଦିଉଠେ ବିଶ୍ୱ ଯାଜ୍ଞସେନୀ,
କାନ୍ଦୁଛି ଦେବକୀ ମାଆ, ମେରୀମାତା, ରାମର ଘରଣୀ,
କାନ୍ଦିଉଠେ କବି, ଶିଳ୍ପୀ, କଳାକାର, କାନ୍ଦୁଛି ସୁଂଦର,
କାନ୍ଦି ଉଠେ ଇତିହାସ, କାନ୍ଦେ କାବ୍ୟ, ଉତ୍ତାପ ଛଂଦର ।

ପୋଛିବାକୁ ଏଇ ଲୁହବାରି,
ସଚେତନ-ମାନବତା ନ ଧରିଲେ ତୀକ୍ଷ୍ଣ ତରବାରୀ;
ନହୋଇଲେ ସଂଗଠିତ, ସାମାଜିକ-ବିପ୍ଳବର ଶିଖା –
ହେବନାହିଁ ପ୍ରଜ୍ୱଳିତ, ଦାନବୀୟ-କଳଙ୍କର ଟୀକା –
ଲିଭିବନି ବିଶ୍ୱମାତା ସୀମନ୍ତର ଛାୟାପଥ ଦେହୁଁ,
ହେ ମଣିଷ, ଉଠ, ଜାଗ, ଆଗୁଁସାର ହୁଅ ମହାବାହୁ !
ଜୀବନ ଓ ମରଣର ମଧ୍ୟଭାଗେ ଯଥା ପେଣ୍ଡୁଲମ୍
କେତେକାଳ ଦେବ ଦୋଳା; ବୁଡ଼ିଯାଏ ମଣିଷର ନାମ୍ ।

ମଣିଷକୁ ଆଶୀର୍ବାଦ
କର ତମେ ହେ ଜୀବ ବିଜ୍ଞାନି !
ନବ ନବ ଉତ୍ତରଣେ
ଭେଟୁ ପଥେ, ନବଉଦ୍‌ବୋଧନୀ ।



ର.କା.
୨୦ ଏପ୍ରିଲ ୯୫
ସଂଧ୍ୟା

# ହାତ

ସ୍ୱାଧୀନତା କେବଳ କାମ୍ୟ ନୁହେ
କାମ୍ୟ : ମୁକ୍ତି
ସ୍ୱାଧୀନତା ଆଉ ମୁକ୍ତି ଏକା ଜିନିଷ ନୁହେଁ ।

ଆଜି
ମଣିଷ ମଣିଷ ଭିତରେ,
ଜାତି ଜାତି ଭିତରେ,
ଗାଁ ଗାଁ ଭିତରେ,
ହୃଦୟ ହୃଦୟ ଭିତରେ
ବିଭେଦ, ଅସୂୟା ବିଦ୍ୱେଷର ବିଷବୀଜ
ପୋତିଛି କିଏ ?
କିଏ ପୋତିଛି ?
ପୋତିଛି ସାମନ୍ତବାଦ,
ଆଧିପତ୍ୟବାଦ,
ଅମଲା ତାନ୍ତ୍ରିକ-ପୁଞ୍ଜିବାଦ,
ସାମ୍ରାଜ୍ୟବାଦ ।

ଯାହାର ଅଲିଖିତ,
ଆନ୍ତର୍ଜାତିକ-ସଂବିଧାନରେ ଅଛି :
ଯାହାକୁ ପାଅ, ଯେତେବେଳେ ପାଅ
ଯେଉଁଠିପାଅ
ତାକୁ ଲୁଟ୍ କର......ହତ୍ୟାକର ।

ଜୀବବିଜ୍ଞାନୀ ଡାରଉଇନ୍ କହିଗଲେ :
ବାନରର ଅଭିବ୍ୟକ୍ତି ହେଉଛି ମଣିଷ ।
କିନ୍ତୁ ମଣିଷର ଅଭିବ୍ୟକ୍ତି କ'ଣ ପିଶାଚ ?
ଯିଏ ଶବକୁ ଚୋରିକରେ
ଆଉ ଲୁଚାଇ ରଖେ ।

ଏ ପ୍ରଶ୍ନର ଉତ୍ତର ଭାଷାରେ ନ ମିଳିଲେ ବି
ମିଳୁଛି ଆଚରଣରେ ।
ମଣିଷର ପ୍ରିୟ ବାସଭୂମି
ଶ୍ୟାମଳ ଗ୍ରହ ଏ ସୁନ୍ଦରୀ ପତିତା ବସୁମତୀ
ଆଜି ଅଶାନ୍ତ.....ଆନ୍ଦୋଳିତ ।
ତମାମ୍ ଭାରତରେ ସଂସ୍କୃତି, ଅପ-ସଂସ୍କୃତିର
ରକ୍ତାକ୍ତ ସଂଘାତ.....ଭ୍ରାତୃଘାତୀ-ଦଙ୍ଗା ।
ଅହିଫେନ୍ ଧର୍ମୀ ଧର୍ମୀୟ-ମୌଳବାଦର
ଉଦ୍ୟତ ବିଷାକ୍ତ ଫଣା
ଗୋପନରେ ଜନ୍ମନିଏ ସାମାଜିକ-ଫ୍ୟାସିବାଦର
ସ୍ୱସ୍ତିକ୍-ରାଜଧାନୀ ।
''ବିଶ୍ୱକୁଟୁମ୍ବିତା''କୁ ଏକ ରୋଚକ ଶବ୍ଦରେ
ପରିଣତ କରିଛି କିଏ ?
ଏ ପ୍ରଶ୍ନର ଉତ୍ତର ଦେବାର ସାମର୍ଥ୍ୟ ଅଛି କା'ର ?
ଜଗନ୍ନାଥ ପଙ୍ଗୁ
ଭଗବାନ ମୂକ
ବିଧାତା ନିଷ୍ଠୁର
ଯୀଶୁ ଏବଂ ଆଲ୍ଲା ରକ୍ତପିପାସୁ ।
ଏ ପ୍ରଶ୍ନର ଉତ୍ତର ଦେବ
ଦେଇ ଆସିଛି—ମଣିଷ ।
ମଣିଷର ହାତ ଆଉ ତାର ମେହନତ
ସବୁ ପ୍ରଶ୍ନର ଉତ୍ତର ଦେଇ ଆସିଛି ଯୁଗେ ଯୁଗେ ।
ବୀରମାନେ ନୁହନ୍ତି
ଅଗଣିତ ମେହନତୀ ମଣିଷ ହିଁ
ଇତିହାସର ନିର୍ମାତା,
ଧରଣୀର ବିଜ୍ଞାଣୀ ଆଉ ବିଶ୍ୱକର୍ମା ।
ପୃଥିବୀର ଜାତୀୟ ଜୀବନରେ
ଆଉ
ଭାରତବର୍ଷରେ ଯାହା କିଛି ସାମାଜିକ ପରିବର୍ତ୍ତନ ଘଟିବ
ତାକୁ ଘଟାଇବ ମଣିଷ ।

ମଣିଷ ହିଁ ଚୂଡ଼ାନ୍ତ ସତ୍ୟ ।
ମୁଁ ସେ ମଣିଷକୁ ବିଶ୍ୱାସ କରେ ।
ମଣିଷର ହାତ ବଡ଼ ନିଖୁଣ ।
ସେ ହାତ କେବଳ ଶ୍ରମର ଅଂଶ ନୁହେଁ
ଶ୍ରମର ସ୍ରଷ୍ଟା ।

ମଣିଷର ହାତ ଏତେ ମାତ୍ରାରେ ନିଖୁଣ ଯେ
ସତେ ଯେପରି ଏକ ମାୟାଜାଲ ଦ୍ୱାରା
ସୃଷ୍ଟି କରିପାରେ ରାଫାଏଲ୍‌ଙ୍କ ଚିତ୍ରକଳା,
ଥର୍ ୱାଲ୍‌ଡସନ୍‌ଙ୍କ ଭାସ୍କର୍ଯ୍ୟ,
ପାଗାନିନ୍‌ଙ୍କ ସଙ୍ଗୀତ ।

ମଣିଷର ମେହନତ, ତା' ହାତର ଯଶ ହେଉଛି
ପୃଥିବୀର ସୌନ୍ଦର୍ଯ୍ୟ,
ମାନବିକଐକ୍ୟ ଆଉ ସଂହତି ।
ଶ୍ରମରୁ ଏବଂ ଶ୍ରମ ସହିତ ଭାଷାର ଜନ୍ମ
ପ୍ରଥମେ ଶ୍ରମ, ତା'ପରେ ଭାଷା ଆଉ କଥା
ଏ ଦୁଇଟି ପ୍ରଧାନତମ ପ୍ରେରଣା ।
ଯାହାର ପ୍ରଭାବରେ ବାନରର ମସ୍ତିଷ୍କ
କ୍ରମେ ମଣିଷର ମସ୍ତିଷ୍କକୁ
ଲଭିଥିଲା ରୂପାନ୍ତର,
ଶ୍ରମର ଆରମ୍ଭ—ହତିଆର ଗଢ଼ାରୁ ।

ସେଇ ମଣିଷ ଏକ ଜାତି
ମାନବବାଦ ତାର ଧର୍ମ,
ହୃଦ୍ୟତା ତା'ର ମନ୍ଦିର
ଐକ୍ୟ ଆଉ ସଂହତି ତା'ର ପରାକ୍ରମ ।



(ଦୂରଦର୍ଶନ ସୌଜନ୍ୟରୁ)

# ମଧ୍ୟପନ୍ଥୀ

॥ ୧ ॥

ଇତିହାସର ମଞ୍ଚରେ
ଗୁରୁତ୍ୱପୂର୍ଣ୍ଣ ସବୁ ଘଟଣା,
ସମସ୍ତ ବ୍ୟକ୍ତିବର୍ଗ
ଥରେ ନୁହେଁ, ଦୁଇଥର
ହୁଅନ୍ତି ହାଜର ॥

ପ୍ରଥମେ ଆସନ୍ତି
ବିୟୋଗାନ୍ତ-ନାଟକର
ନାୟକର ଦଳ,
ତାଙ୍କର ପ୍ରସ୍ଥାନ ପରେ
ଆସେ ପ୍ରହସନ,
ଆସନ୍ତି ବିଦୂଷକେ
ଆସନ୍ତି ଜୋକର୍ ।
ଦାଁ ତୋଁ ବଦଳରେ
ଆସେ କସିଦିୟେର୍,
ରବେସ୍‌ପିୟର ବଦଳରେ
ଆସେ ଲୁଇ ବ୍ଲାଁ,
ଦାଦୀ ବଦଳରେ
ଆସନ୍ତି ପୁତୁରା ॥

ବିଗତର ପୂର୍ବସୂରୀ,
ସେମାନଙ୍କର ସମସ୍ତ ଐତିହ୍ୟ,
ଜୀବିତର ମଗଜ୍‌ରେ
ହୁଅଇ ସବାର୍
ବିହ୍ୱଳ ଏକ ଦୁଃସ୍ୱପ୍ନ ଯେପରି !

ବିପ୍ଳବ ଓ ସୃଷ୍ଟିକର୍ମ
ବୈପ୍ଳବିକ-ସଂକଟ ପର୍ବରେ
ସେମାନେ ଆଣନ୍ତି ଟାଣି
ଅତୀତର ସେ ଭୂତ-ପ୍ରେତକୁ,
ହୁଅନ୍ତି ବ୍ୟାକୁଳ
ଲଗାଇବା ପାଇଁ ତା'କୁ
ଆପଣା କାମରେ ।।

ସେହି ଭୂତ, ସେମାନଙ୍କ ନାମ,
ସେମାନଙ୍କ ରଣଧ୍ୱନି, ବେଶ ବା ପୋଷାକ,
ସବୁକୁ ଉଧାର୍ ଆଣି ଧରଣୀର
ଇତିହାସ ପଟେ,
ଦେଖାନ୍ତି ନୂତନ ଦୃଶ୍ୟ
କାଳପୂଜ୍ୟ-ଛଦ୍ମବେଶଧାରୀ
କିଛି ବି ତ ନୂଆ ନୁହେଁ
ଡକାୟତୀ, ରାହାଜାନୀ, ଶୋଷଣ, କଷଣ,
ଦୁର୍ନୀତି ଓ ଜାଲ୍-ଜୁଆଚୋରୀ ।।

।। ୨ ।।

କୌଣସି ଏକ ଟ୍ରାଫିକ୍-ଆଇଲ୍ୟାଣ୍ଡରୁ
ଚାଲିଯାଏ ଯଦି ଜଣେ ଟ୍ରାଫିକ୍ ସିପାହୀ,
ତା ଜାଗରେ ଆସେ ଆଉ ଜଣେ,
ସେ ଜଣକ ହୋଇପାରେ କୃଶତନୁ ଅଥବା ପୃଥୁଳ !
କିଛି ଯାଏ-ଆସେ ନାହିଁ
ମୋଟା-ପତଳାର ।।

ଏକା ବେଶ, ଏକା ତ ପୋଷାକ
ଚରିତ୍ର ବି ଏକ ।
''ସେଇ ଜିନିଷ—ସେଇ କାମ
ଆଜି କିନ୍ତୁ ନୂଆ ନାମ'' :
''ଟିନୋପାଲ'' ଜାଗାରେ ''ରାନୀପାଲ୍'',

ଗୋଟିଏ ମାତ୍ର ପରିଚୟ : ଟ୍ରାଫିକ୍ ସିପାହୀ,
କର୍ତ୍ତବ୍ୟରେ ରତ
ଅବିରତ ଗାଡ଼ିକୁ ଦେଖାଏ ହାତ ।।

।। ୩ ।।

ଥରେ ହେଲେ ନିର୍ବାଚନ
ଥରେ ହେଲେ ଭୋଟ୍,
କୋଟି କୋଟି ଟାଉଟର୍
ହୁଅନ୍ତି 'ଜର୍ମିନେଟ୍' ।।

ବାପ ପରେ ଝିଅ ଆସେ
ଝିଅ ପରେ ନାତି,
ଆସେ ବଂଶାନୁକ୍ରମିକ –
କ୍ଷମତାର ରାଜନୀତି ।

ମଣିଷ ବିରୋଧେ
ଖଡ୍‌ଗ ଧରେ ମଣିଷର
ତିଆରି ସଂସ୍କୃତି ।।

ଜୀବନଟା ହୋଇଉଠେ
ଆତ୍ମକେନ୍ଦ୍ରୀ-ଘଣା,
ଚାରିଦିଗେ ତାର
ଅହରହ ମଣିଷର
ଚାଲେ ପରିକ୍ରମା ।।



ର.କା.
ଅକ୍ଟୋବର, ୧୯୮୪

# ଆବାହନ

ପୃଥିବୀ ଜଳୁଛି ଆଜି ଆନ୍ଦୋଳିତ, ଜନାରଣ୍ୟେ ଝଡ଼
ମଣିଷ ଛୁଟିଛି ଆଜି ଦୃପ୍ତପଦେ, ଅସାମ୍ୟର ମେଢ଼ –
ଭାଙ୍ଗିବାକୁ । ଏଠି ନିଭି ସେଠି ଜଳେ ନିଆଁ,
ଜୀବନ, ମରଣ ଆଜି ହାତାହାତି, ଅଶ୍ରାନ୍ତ ଦୁନିଆ ।
ବର୍ଷପରେ, ବର୍ଷ ଯାଏ, ଦିନ, ମାସ ପକ୍ଷ ଓ ସପ୍ତାହ,
ଶତାବ୍ଦୀ ବରିଷ୍ଠ ହୁଏ, ବେଗଗାମୀ ସମୟର ସୁଅ –
ବହିଚାଲେ ସମ୍ମୁଖକୁ ସ୍କନ୍ଧେ ବହି ଦୁଃଶାସନ ଶବ,
କଥା କହେ ଇତିହାସ, ମଣିଷର ବିପ୍ଳବୀ-ଶୈଶବ ।
ମଣିଷ ଟେକୁଛି ମଥା ଆ-ସମୁଦ୍ର ପୃଥିବୀର କୋଣେ,
ଯେଉଁପରି ନବଭାନୁ, ସେହିପରି ବିଶ୍ୱର ତୋରଣେ ।
ମାନବବାଦର ଝଣ୍ଡା ପୋତିବାକୁ ବଦ୍ଧମୁଷ୍ଟି ହାତ,
ବଦ୍ଧ ପରିକର ଯେବେ, ମୃତ୍ୟୁ ସାଥେ ଘଟୁଛି ସଂଘାତ ।

ଯାରି ମଧ୍ୟେ ଆସ ତମେ ନବବର୍ଷ ନେଇକି ସଂଦେଶ ?
ଆଣିଛ କି ଜୟବାର୍ତ୍ତା ! କେବେ ହେବ ଶୋଷଣର ଶେଷ –
ମଣିଷର ଜୀବନରୁ ? ଧରଣୀରୁ ଅଶାନ୍ତିର ନିଆଁ –
କେବେ ହେବ ନିର୍ବାପିତ ? ଜନ୍ମନେବ ସାମ୍ୟର ଦୁନିଆ,
ସରଳ, ରୈଖୀକ ହେବ କେବେ କୁହ ଜୀବନର ପଥ ?
କେ କବି ଲେଖିବ କେବେ ଜୀବନର ନୂତନ ସଂଗୀତ ?

ଜୀବନର ଅର୍ଥ ଆଜି ଦ୍ୱନ୍ଦ୍ୱମୟ, କେବଳ ସଂଗ୍ରାମ
ଜୀବନର ରଣାଂଗନୁ କରେ କବି ତବ ଆବାହନ ।

(ଦୂରଦର୍ଶନ ସୌଜନ୍ୟରୁ)



ର.କା.
୩୦ ଡିସେମ୍ବର ୧୯୮୯
ସକାଳ

# ଫରମାନ୍

*(ନିଜକୁ ଭାରତ ସରକାର ମନେକରି)*

ହିଂସାର ପଥ ପରିହାର କର, ଧର ଅହିଂସା ଝୁଲି,
ବାଘ ଯେତେ ଅଛ ଘାସଖାଅ ସବୁ, ବନିଯାଅ ତମେ ଛେଳି ।
ଯାହା ଯାହା ତମ ଅଛି ହତିଆର
ଆମ ପାଖେ ସବୁ କର ଆଣି ଠୁଳ
ପ୍ରଥମରୁ କଥା କିଆଁ ନମାନିଲ, ଅମାନିଆ ହେଲ ବୋଲି –

ଆମେ ବଳବାନ ତମକୁ ମାରିଲୁ, ତମେ ସବୁ ଦୁରୁବଳ,
ତମ ମରିବାଟା ଯୁକ୍ତିସିଦ୍ଧ, ପ୍ରତିରୋଧ କିଆଁ କଲ ?
ଆମେ ଏସିଆର ଦାଦା, ବଡ଼ଭାଇ
ଘରେ ପଶିଗଲୁ, ମାନିଲୁ ତ ନାହିଁ
ଦେଖିଲ ଯା ହେଲା ? ଆମରି ମାଡ଼ରେ କେଉଁପରି ସବୁ ମଲ !

ପାରିହେବା ପାଇଁ ଆମେ ଭବନଦୀ ଧରିଛୁ ଭୋଅଟ-ଭେଳା,
ଆମେ ଏସିଆର 'ବୃହତ୍‌ଶକ୍ତି', ଆମେ 'ରଘୁପତି' ଚେଲା ।
ଏତେ ବଡ଼ ଦେଶେ ଆମରି ଶାସନ –
ଚାଲିଛି କିପରି, ତା'କି ତମେ ଜାଣ ?
ଆମେ ନାଗରିକେ କରିଛୁ ତ ଖାସୁ, ପୁରା ହତିଆର-ହରା ।

ଧର୍ମ-ଅଫିମ, ଖେଳ ଆଉ ଟି.ଭି. ନଗ୍ନନାରୀର ଛବି,
'ପ୍ରଗତି' ଆମର ମନ୍ତ୍ର ମହାନ, ଭାଟ, ଉଡ଼ାଟିଆ କବି ।
ପୋତିଛୁ ଦେଶକୁ ବିଦେଶୀର ଋଣେ,
ଯେତେ ଜଳିଲେ ବି ନିଆଁ କୋଣେ କୋଣେ
ଅଛି ଦମକଳ, ଆମେ ଡ଼ରିନାହୁଁ, ଯିବୁ ନାହିଁ ମୋଟେ ଦବି ।

ଆମରି ସୈନ୍ୟ, ଆମରି ପୁଲିସ ଅକଳନ, ମହାବଳୀ,
ଆଳୁ କାଟିବାକୁ ଆମର ତ ନିତି ଲୋଡ଼ା ହୁଏ ତରବାରୀ ।
ଚାରିପାଖେ ଅଛ ଯେତେ ଛୋଟ ଦେଶ,
ରଖିପାରିବନି କେହି ମୋଟେ ନିଶ
ଦେଖାଇବ ଯଦି କେହି ପୌରୁଷ, ଦେବୁ ଇଜ୍ଜତ ସାରି ।

ଆମ ଦୁଇପାଖେ ରୁବଲ-ଡଲାର, ମଝିରେ ଝୁଲୁଛୁ ଆମେ,
ସେକାରୁଟି ପରି ଆମେ ତ ଫୁଲୁଛୁ ରଘୁ-ରାଜା-ରାମ ନାମେ ।
ଆମେ କହିଥିଲୁ ହତିଆର ରଖ,
ହେ ତାମିଲ୍‌ବାଘ, କାଟିଦିଅ ନଖ,
ବୀର ଯେତେ ଅଛ ପିନ୍ଧ ହେ ଶାଢ଼ୀ, ଖାଅ, ପିଅ, ଶୁଅ ପ୍ରେମେ ।

ଖାଦ୍ୟଟା ସିନା ଆସିବ କୋଉଠୁ ସେକଥାଟା ତମେ ଜାଣ,
ପିଇବାକୁ ଆମେ ଯୋଗାଇ ତ ଦେବୁ, ଦେଖାଯିବ ତ୍ରିଭୁବନ ।
ରମ୍ଭା ସହିତ ଆସି ଉର୍ବଶୀ
ପାଖରେ ତମର ପଡ଼ିବେ ତ ବସି
କହିବେ–''କାହିଁକି ଗୁମାନେ ବସିଛ ହେ ପରାଣ ପ୍ରିୟତମ ?''

ଭିତରେ-ବାହାରେ, ପଡ଼ା-ପଡ଼ୋଶୀରେ ଯେତେ ଅଛ ସବୁ ପ୍ରଜା,
ବେଳ ଥାଉଁ ଥାଉଁ ହୁସିଆର ହୁଅ, କାଚଘରୁ କହେ ରଜା –
ରାଜନୀତି କେହିଁ କରନା, କରନା
ବିନାନୁମତିରେ ଅସ୍ତ୍ର ଧରନା
ଉଡ଼ାରେ ତ ଆସ, ଉଡ଼ାରେ ତ ଯାଅ, 'ହାରେମ୍'ର ହୁଅ 'ଖୋଜା' ।



ର.କା.
''ନିଃନି''
୩ ମେ ୧୯୮୮

# ସାମୟିକା

କାହିଁକି ଆସିଲ ? କାହିଁକି ବା ଗଲ
ଜାଣିକି ନଥିଲ ଏଠି ? –
ଦିବସ-ରଜନୀ ଝଡ଼ ପିଟେ ଡ଼େଣା
ଭୂମିକମ୍ପରେ ମାଟି –
ଅସହାୟ ଶିଶୁ ପରି ଥରଥର
ଏଠାର ଆବହ 'ଏକା'
ଏଠି ନିଭେ-ଜଳେ ମହାବିଦ୍ରୋହ
ରକ୍ତମଶାଲ ଶିଖା ।
ଏ ମୋ ମୁଲକର ବୃକ୍ଷଶାଖାରୁ
କୋକିଳ ଯାଇଛି ଉଡ଼ି,
ଫାଲ୍‌ଗୁନ-ବନ-ମଂଦ-ପବନ
ଅକାଳେ ପଡ଼ିଛି ଝଡ଼ି ।
ଏଠି ହାହାକାର ମରୁ ସାହାରାର
ଆଦିମ, ଅସୀମ ତୃଷା,
ଏ ମୁଲକେ ନାହିଁ କଳନାଦିନୀ ସେ
ଝରଣାର ଆଡ଼ଋଷା ।
ଏ ମୋ ମୁଲକର ଉର୍ଦ୍ଧାକାଶରେ
ନିଶୀଥେ ଚନ୍ଦ୍ରମୁଖୀ
ଶୂନ୍ୟ-ନୟନେ ତଳକୁ ଅନାଏଁ
ବିଚାରୀ ସେ ନିରିମାଖୀ !
ଦୂରେ ଥିଲ ଭଲ, ମୋତେ ଖୋଜୁଥିଲ
ଦୂରୁଁ ଥିଲି ସୁନ୍ଦର –
ନିକଟକୁ ଆସି ଦେଖିଲ ଆଖିରେ
ଭୀଷଣ, ଭୟଙ୍କର –
ମୋର ଏ ଆବହ ସଦା ମରୁମୟ
ଶୁଷ୍କ, ନିରସ ପ୍ରାଣ –
ଚୁମ୍ବନ ଦେଇ ପ୍ରତିଦାନେ ତାର
ଅର୍ଜିଛ ଦଂଶନ ।

ନଇକଟ୍ୟର ଅଛି ତ ନିଷ୍ଠୁରତା,
ଧୀରେ, ଅତି ଧୀରେ ପଛକୁ ଫେରିଛ
ହେ ନାରି ନିର୍ଯ୍ୟାତିତା !

ମୋ ଭାବମୂର୍ତ୍ତି, ମୋର ପ୍ରତିଭାର ପ୍ରବଳ ଆକର୍ଷଣେ
ଡାକି ନ ଥିଲେ ବି, ତମେ ଆସିଥିଲ ମୋ ଜୀବନ ଅଂଗନେ ।
ହେ ଭୀରୁ-ଯୂଥିକା, ଧୀର ପଦପାତେ ନିର୍ଜନ ଦି-ପହରେ
ତମେ ଆସିଥିଲ ଅପରାହ୍ନ ମୋ ଜୀବନ ଆକାଶ ତଳେ ।
ହାତରେ ତ ଥିଲା ଶୂନ୍ୟପାତ୍ର, ଶୂନ୍ୟ ନୟନ ବେନି,
ତମେ ଆସିଥିଲ ମୋ ଜୀବନ ପଥେ ପ୍ରୀତିର ମନ୍ଦାକିନୀ,
ପଥଭୁଲା ରାଜହଂସୀ କି ତମେ ? ଆସି ପୁଣି ଗଲ ଫେରି ?
ଆସିଛି ଅନେକ, କେହି ରହିନାହିଁ, ନାହିଁ କେହି ରହିପାରି ।

ତମେ ଆସିଥିଲ, ତମେ ପୁଣିଗଲ, ବିଦାୟ ମୁଁ ଦେଇ ନାହିଁ
ହୃଦୟେ ଉଦୟ ହେହେତୁ ନହେଲ, ଅସ୍ତ ସେଇଥିପାଇଁ –
ହେଲ ଏକୁଟିଆ, ଜୀବନ ପ୍ରବାହ ବହୁ ପୁଣି ଆଗଭଳି
ମନେ ମୋ ରହିବ ତମେ, ତମଛବି, ଜଳୁଥିବି, ଜଳିଜଳି –
ଦିନେ ନିଭିଯିବି, ସେଦିନ ମନରେ ଦ୍ୱିପ୍ରାହରିକ-ସ୍ମୃତି,
ଭେଟିଥିଲ ଯାକୁ, ପରିଚୟ ତାର ଅଗ୍ନିର ପ୍ରଜାପତି –
ହୋଇଥିଲା ଦିନେ ତମରି ସେ ପ୍ରିୟତମ,
ଦୁନିଆ, ସମାଜ କେହିବି ଜାଣେନା, ତମେ ତାହା ନିଜେ ଜାଣ ।

ନୀରବ ନିଶୀଥ ରାତେ,
ତମକୁ ଭାବୁଛି, ତମେ ବହୁଦୂରେ
ମୁଁ ଚାଲିଛି ମୋର ପଥେ ।
ଯେଉଁ ରିକ୍ତକୁ ସେହି ରିକ୍ତ ମୁଁ, ଶୂନ୍ୟ-ହୃଦୟ, ଏକା
ଆଗରେ-ପଛରେ, ଉପରେ ଓ ତଳେ ''ନାହିଁ ନାହିଁ'' ବିଭୀଷିକା ।
''ହଁ'' ବୋଲି ତମେ କହି ପାରିଲନି, ତମରି ଆବହ ତାହା
ଯେତିକି ହୋଇଛି ପ୍ରାଣ ଦିଆନିଆ, ସ୍ମୃତିରେ ରହିଲା ତାହା ।
ବିଦାୟ ଦିଅ ଗୋ ନିଅ !
ମୁଁ ତ ଭଲନାହିଁ, ଭଲ ରହିବିନି
ତମେ ପ୍ରିୟେ ଭଲ ଥାଅ ।



ର.କା.
୧୧ ନଭେମ୍ବର ୧୯୮୭
ମଧ୍ୟରାତ୍ରି

# ଅଭିଶାପ

ରଙ୍ଗ୍ ସୁଇଚ୍‌ରେ କାହିଁକି ମାରିଲ ହାତ ?
ହୁଇସିଲ୍ ମାରି ଡାକିଲ କାହିଁକି କିଳା ?
କାହିଁକି ଗାଇଲ ପ୍ରତାରଣା-ପ୍ରେମ-ଗୀତ ?
କାହିଁକି ଖୋଲିଲ ରୁଦ୍ଧ-ଦେଉଳୁଁ ତାଲା ?

ଯଦିଚ୍ ଖୋଲିଲ ପବିତ୍ର ଭାବେ କିଆଁ
ମନେ-ପ୍ରାଣେ-ଦେହେ ସର୍ବସମର୍ପଣ —
ନକରି, ଛଳନା, ପ୍ରତାରଣା କଲ କିଆଁ ?
ଅର୍ଜିଲ କିଆଁ ଅଭିଶାପ ବର୍ଷଣ ?

ଦେବତାର ଆଖି ଲୁହ ପାଲଟିଲା ଲହୁ
ପ୍ରେମିକ ହୃଦୟ ପ୍ରବଳ ଅଗ୍ନିଗିରି,
ଅସଂତୋଷର ତୁଷାନଳ ଦାଉ ଦାଉ
ସେ କରି ଚାଲିବ ତମକୁ ତ ହତଶିରୀ ।

ସର୍ବନିମ୍ନ ଶାନ୍ତି ତମର ଯାହା
ଜଳିପଡ଼ି ତାହା ପାଉଁଶ ହୋଇବ, ନାରି !
ନିଜହାତେ ନିଜ ମୁଖାକୁ ଖୋଲିଛ ଆହା !
ଆପଣା ଛାତିରେ ଆପେ ତ ମାରିଛ ଛୁରୀ ।

ପ୍ରତିପଦେ ପଦେ ତମେ ହେବ ପ୍ରତାରିତ
ଅଜାଗାର ଘାଆ ନିଜେ ପାରିବନି ଦେଖି,
ଦେଖାଇବି କାରେ ପାରିବନି କ୍ଷତକୁ ତ
ନୀରବ-ଦହନ, କେବଳ ଶୂନ୍ୟ ଆଖି ।

ଶୂନ୍ୟ-ହୃଦୟ, ଶୂନ୍ୟ ମନକୁ ନେଇ
ଜୀବନ ବିତିବ ଦିବସ-ରଜନୀ ସିନା,
ଯାହା ହରାଇଲ, କେହିତା ହରାଏ ନାହିଁ
ତନ୍ତ୍ରୀ ଯାହାର ଛିଡ଼ାଇଛ ସିଏ ବୀଣା ।

ସେ ବୀଣାରେ ଆଜି ଝଙ୍କାର ନାହିଁ, ଜ୍ୱାଳା
ତମେ ତ ଭରିଛ କାଳକୂଟ ହଳାହଳ,
ପର ଜନ୍ମରେ ଧରିବ ସେ ତମ ଗଳା
ପାଇବନି କାର ପ୍ରେମର ବରଣମାଳ ।

ଆଜି ତାର ପ୍ରାକ୍ ସୂଚନା ଦେଲାଣି ଦେଖା
ଧୀରେ ଧୀରେ ଆସେ ବିଷାଦ-ଅନ୍ଧାକାର,
ପ୍ରତାରିତ-ପ୍ରେମ ଅଭିଶାପ-ବିଭୀଷିକା
ଏକାକୀତ୍ୱକୁ ଦେବ ସିନା "ଉପହାର" ।

ସବୁ ଥାଇ କିଛି ନଥିବ ତମର ସିନା
ତମକୁ ତ ଏହା ତମ ଛଳନାର ଦାନ,
ଦେବତାକୁ ଡାକି ପୂଜା ତାର ଅର୍ଚ୍ଚନା –
ନକରି, ମିଥ୍ୟା-ମନ୍ତ୍ର ଉଚ୍ଚାରଣ –

ଫଳ ତ ହୋଇଛି ଅତି ବିଷମୟ ଜାଣ
ଏ ବିଷ ତମର ଜୀବନ ତ ନେବ ନାହିଁ,
ଏ ବିଷ ତମର ଦଂଶିବ ମନ, ପ୍ରାଣ
ତିନିପୁରେ କାହିଁ ଠାବ ତ ମିଳିବ ନାହିଁ ।

ଏ ପାପୁଁ ମୁକ୍ତ ହେବାର ଇଚ୍ଛା ଥିଲେ
ଅନୁତାପ-ତାପେ ତତାଇ ହୃଦୟ, ମନ,
ପ୍ରତାରିତ ସେହି ପ୍ରେମର ଦେଉଳ ଦ୍ୱାରେ
ଆପଣାକୁ କର ସର୍ବ ସମର୍ପଣ ।

ତାର ଧ୍ୟାନଗୁହା ମନ୍ଦିର ପାହାଚରେ
ନିଜ ଶଠତାର ପ୍ରାୟଶ୍ଚିତ କର ନାରି !
ନହେଲେ ଭାସିବ ବେଦନାର ପାରାବାରେ
ଜୀବିତ ରହିବ ନରକର କୀଟପରି ।



ର.କା.
୨୩ ଫେବୃଆରୀ
୧୯୯୭ ଦିନ ୨ଟା

# ଅପ୍ରେମର କବିତା

ନାରୀ-ବନ୍ଦନା ବହୁତ କରିଛି କବି
ତାର ରୂପଛବି ଆଙ୍କିଛି ବସି ବସି,
କ୍ରମାଗତ ମୋର ହଜାଇ ବସିଛି ଚାବି
ଦରଜାରେ ତାଲା, ବାହାରେ ରହିଛି ବସି ।

ଭାଙ୍ଗିଛି ତାଲା ଦିନ ଗଡ଼ିଗଲା ପରେ
ନିଜକୁ କରିଛି ନୀରବରେ ଧିକ୍କାର,
ହୃଦୟ ଜଳିଛି ସାହାରାର ହାହାକାରେ
ବନ୍ଦୀ କରିଛି ଏକାକୀତ୍ୱର ଘେର ।

ପ୍ରେମର ଦେଉଳେ ଅନେକ ଭକ୍ତ ଭିଡ଼
ପଳାଇ ଆସିଛ ଦି'ହାତେ ଢାଙ୍କି ଆଖି
ଦେଖି ଦେଖି ଏଇ ଦୃଶ୍ୟ କବି ମୁଁ ଜଡ଼
ଅପ୍ରେମର ମୁଁ ବସିଛି କାବ୍ୟ ଲେଖି ।

ନାରୀର ସେ ମନ-ନର୍ଦ୍ଦମା ମନ୍ଥନ –
କରି ମୁଁ ବୁଝିଛି ପ୍ରେମ ପ୍ରେମ ମିଛ କଥା,
ପ୍ରାକ୍-ସଂଭୋଗ ବେଳେ ଶୁଭେ ''ପ୍ରିୟତମ !''
ବହୁ ସଂଭୋଗ ପରେ ପ୍ରିୟା 'ସତୀସୀତା' !

ସୁବିଧା-ସୁଯୋଗ ନଥିଲେ ତ ନାରୀ ''ସତୀ''
ସୁବିଧା ନଥିଲେ ଚାକର କରେନା ଚୋରି,
ସୁବିଧା-ସୁଯୋଗ ନଥିଲେ ତ ଦୁର୍ନୀତି
ହୋଇ ତ ପାରେନା ସମ୍ଭବ ଯେଉଁପରି ।

ନିରୋଧ ଯୁଗରେ ନିର୍ଭୀକା ହେଲାପରେ
ନାଲି-ତ୍ରିକୋଣର ନିର୍ଧୂମ ଗୋପୀଲୀଳା,

ପ୍ରେମର ଦେଉଳେ ଭକ୍ତର ଭିଡ଼ ବଢ଼େ
ନାରୀ ଯେ ଅସତୀ, ପ୍ରମାଣ କେଉଁଠି ଭଲା !

''ପାତିବ୍ରତ୍ୟ''ର ଶବ୍‌ଦଟା ଅଭିଧାନେ –
ରହିଛି କେବଳ ଆଦିମ-ସାଇନ୍ ବୋର୍ଡ୍
ସେଥିରୁ ରଙ୍ଗ ଛାଡୁଛି ସଂଗୋପନେ
ହେଲେ ବି ସେଥିରେ କମ୍ ନୁହେଁ ମୁହଁ ତୋଡ଼୍ !

'ମାଲ୍' ଦେଲେ ମାଲ୍ ଆସିବ ତ ସାମୟିକା
ଶୀତ-ସନ୍ଧ୍ୟାରେ ପକାଇ-ଗୋଲାପୀ ଶାଲ୍,
ସ୍ତନଉତ୍ତରୀ ଖୋଲି ଦେବ ମାଳବିକା,
ନିଭିବ ଆଲୋକ, ନିବିଡ଼ ଅନ୍ଧକାର ।

ବାଳ ବି ଭେଜାଲ, ଭେଜାଲ୍‌ତ ବେଶଭୂଷା
ପ୍ରେମ ବି ଭେଜାଲ୍ କଟି-ପଶ୍ଚାତଭାଗ,
ଚୁମ୍ବନ ପୁଣି ଭେଜାଲ୍, ତ ଆଡ଼ରୁଷା
ଘରେ ଓ ବାହାରେ ଭେଜାଲ୍-ପ୍ରେମର ଯୋଗ ।

ପଣ୍ୟପ୍ରେମର ବନ୍ୟ-ଛାଗଳୀ ଦଳ
ଭେଟିଛି ତାଙ୍କୁ ବହୁବାର ଜୀବନରେ,
ପଦ୍ମତ ନୁହେଁ, ପ୍ଲାଷ୍ଟିକ୍-ଶତଦଳ
ଫୁଟିଅଛି ହାୟ ଆବେଗର ପଲ୍ୱକେ !

ଶାଶ୍ୱତ ପ୍ରେମ ମୋ ପାଖରେ ରୂପକଥା
ଆତ୍ମହତ୍ୟା କରିଛି ଶୁଦ୍ଧପ୍ରେମ,
ଭେଜାଲ୍-ପ୍ରେମରେ ପ୍ରବଞ୍ଚନାର ବ୍ୟଥା
ପ୍ରତାରଣା ହେଲା ପ୍ରେମର ଅନ୍ୟନାମ ।

ସମନ୍ୱୟର ବିଧାୟିକା ଯେଉଁ ନାରୀ
ସିଏ ଦେବକଥା ଜୀବନରେ ପୂର୍ଣ୍ଣତା,
ମୁଁ ଦେଖିଛି ତାକୁ ସେତ ଏକ ତରବାରୀ
ଅବୋଧ ସିଏ, ଜଟିଳ ତା ସଂହିତା ।

ସେଥିପାଇଁ କବି ପାଲଟିଛି ମରୁଭୂମି
ଭାବର ଆବେଗ ଭିତରୁ ଯାଇଛି ମରି,
ହୃଦୟ ଅତଳେ ବାଲି ଆଉ ନାଗଫେଣୀ
ଅଭିଶାପ ମୁହିଁ, ଅଭିଶପ୍ତ ମୁଁ ଭାରି ।

ବାଲିଝଡ଼ ମୋର ଗଭୀର ଦୀର୍ଘଶ୍ୱାସ
ଅସୀମ ତୃଷାର ଜ୍ୱଳମାନ-କେତୁ ହାତେ
ସଂଙ୍ଗହୀନ ମୁଁ, ମୁହିଁ ମୋର ନୀଡ଼େ, ଦେଶେ
ରାଜଧାନୀ ମୋର ବାଲୁକାର ପର୍ବତେ ।

ଅତୀତର ପ୍ରେମ କବିତା-ପାଣ୍ଡୁଲିପି
ତୀକ୍ଷ୍ଣ ନଖରେ ଚିରି ଫିଙ୍ଗିଛି ଦୂରେ,
''ନାରୀ'' ନାମଧାରୀ ଯେତେ ତମେ ପ୍ରେମପାପୀ
ବିଷ୍ଠାତୁଲ୍ୟ ତମକୁ ମୁଁ ଘୃଣା କରେ ।



ର.କା.
୪ ଜାନୁଆରୀ, ୧୯୯୭
ମଧ୍ୟାହ୍ନ

# ଶିଳା-ସ୍ଖଳନ

ବଡ଼ ଦେଉଳରୁ ପଥର ଖସୁଛି ଗୋଟାକୁ ଗୋଟା
ପ୍ରତିକାର ତାର କରିପାରୁନାହିଁ ଚକାଆଖିଟା ।
ପ୍ରତ୍ନତତ୍ତ୍ୱ ବିଭାଗେ ପଡ଼ିଛି ଭାଳେଣି ଆଜି
ବେଶି ଡ଼େରିନାହିଁ, ବଡ଼ ଦେଉଳଟା ପଡ଼ିବ ଭାଜି ।

ଜଗନ୍ନାଥ ତ ପଙ୍ଗୁ, ମାଦଳ, ଅଚଳ, ଜଡ଼
ବିରାଟ କାଳିଆ ଅଫିମର ଟେଲା, କାଠରଗଡ଼ ।
ଭକ୍ତ ଗଡୁଛି ବାଇଶି ପାହାଚେ ନିଳମା ଦଳ
ଚାହିଁଛି ଆକାଶୁଁ ଖସିବ ତ କେବେ ଧର୍ମତାଳ !

ଧନ ଲୋଡ଼ା ନାହିଁ, ଜନ ଲୋଡ଼ା ନାହିଁ, ଶରଧା ବାଲି
ସେଇଠି ମଲେ ତ ସ୍ୱର୍ଗକୁ ଯିବ, କରୁଛି ଅଳି ।
ଅଳି କରିବାଟା କିବା ଦରକାର ? ଖାଇଲେ ବିଷ –
ମରିବ ନିଶ୍ଚେଁ, ସେଥିପାଇଁ ଏତେ ଦୀର୍ଘଶ୍ୱାସ !

ବିଜ୍ଞାନ କହେ 'ସ୍ୱର୍ଗ' ବୋଲିରେ କିଛି ତ ନାହିଁ
ବେକାର କଥାକୁ ମଥାରେ ପୂରାଇ ହେଉଛ ବାଇ ।
ପ୍ରତିଟି ଗ୍ରହରେ ଲୁହା ଓ ପଥର, ବାଲି ଓ ଧୂଳି
'ସ୍ୱର୍ଗ' କଥାଟା କବି-କଳ୍ପନା, ନିପଟ ଗୁଲି ।
ଈଶ୍ୱର ଆଉ ଦେବତା, ବ୍ରହ୍ମା ସବୁ ତ ବାଜେ
ମଣିଷ କରିଛି ଜଗନ୍ନାଥକୁ ଜନ୍ମ ନିଜେ ।
ମଣିଷ ତୋଳିଛି ଦେଉଳ, ନଅର ପଥର ତାଡ଼ି,
ତାହାରି ଚୂଡ଼ାରୁ ଖସିଛି ମଣିଷ, ମରିଛି ପଡ଼ି ।

ପଥର ଖସିବା ନୁହେଁ 'ଅଘଟଣ', ବିଜ୍ଞାନ ତ
ଯେତେ ଅଫିମିଆ, ଯେତେ ଭାଙ୍ଗୁଆ, ଅଜ୍ଞାନ ତ ।
ଉଦୟ ସାଥିରେ ଅସ୍ତଟା ଥାଏ, ଭୁଲୁଛ କିଆଁ ?
ବଡ଼ ଦେଉଳଟା କେତେ ଦିନକାର, ଜାଣିନ ତାହା ?

ଭାଙ୍ଗୁଛି ଘର, ଦବୁଛି ପାହାଡ଼ ଯେଉଁଥିପାଇଁ,
ସେଇ କାରଣରୁ ଖସୁଛି ପଥର, ମାଲୁମ୍ ନାହିଁ ?
ମଣିଷ ହେଉଛି ବସ୍ତୁବିମ୍ବ, ତା ମେହନତ,
ସବୁର ସ୍ରଷ୍ଟା, ସୃଷ୍ଟି ତାହାର ଜଗନ୍ନାଥ ।

ମାନବ ସମାଜୁଁ ଶୋଷକ-ଶୋଷିତ କୁଆଡ଼େ ଗଲେ ?
'ବେଦ' ତଳୁ ଉଠେ ନରମେଧ ଶିଖା, ମଣିଷ ମରେ ।
ମନ୍ଦିରେ ତମେ ଜମିଛ ଯେତେକ ଫନ୍ଦିବାଜ,
ମୌଳବାଦକୁ ଧରିଛ ଜାବୁଡ଼ି, ମାଡୁନି ଲାଜ ?
ଭାଙ୍ଗେ ପରିବାର, ସମାଜ ଜୀବନ-ପଡୁନି ଜଣା ?
'ଜାଗାଘରେ' ବସି ଭାଙ୍ଗ ଘୋଟୁଛ, ପିଉଛ ପଣା ।
ବାନ୍‌ଝକୁ ଧରି ଝାନ୍‌ଜ ପିଟୁଛ ଦିବସ ରାତି
ବିନା ମୂଳଧନେ ବଢ଼ିଆ ବେପାର, ନିକମା ଜାତି ।
ରାମ ଓ ଆଲ୍ଲା ମୁହାଁ ମୁହିଁ ଆଜି ରକ୍ତପାୟୀ
ଯୀଶୁ କିଆଁ ଆଜି ରକ୍ତ-ମାତାଲ କୋଉଥିପାଇଁ ?
ତମାମ ଭାରତ ବନ୍ଧାପଡ଼ିଛି, ଅଛି ନା ଜଣା ?
ଶୁଧ ଶୁଝୁ ଶୁଝୁ ପରମାୟୁ ସରେ ବିଦେଶୀ ଦେଣା ।

ବେକାର ଟୋକାର କପାଳେ ଜଳୁଛି ନାଲିଆବତୀ
ଡେଙ୍ଗାଭୂତର ଟ୍ରଲିକୁ ଟାଣୁଛି ଓଡ଼ିଆ ଜାତି ।[୧]
କୁଳଭୁଆସୁଣୀ ପେଟପାଇଁ ନିଜ ବିକୁଛି ଦେହ,
ଘରେ ଘରେ ଆଜି ଭୁଲ୍-ବୁଝାମଣା ଦୁର୍ବିସହ ।
ଜାଲ୍-ଜୁଆଚୋରୀ, ଶୋଷଣ, କଷଣ, ଯାନ୍ତ୍ରିକତା
ଫୁଟିବା ଆଗରୁ ଝରିପଡ଼େ ଫୁଲ, ମରଣ-ଚିତା ।
ତମାମ ଦେଶରେ ଭୋଅଟ ବେପାର, ନୋଅଟ-ଭେଳା
ବଡ଼ଚୋର ଗଲେ ସାନଚୋର ଆସି ଧରୁଛି ଗଳା ।
ଯାକୁ ଦେଖିଶୁଣି ଜଗନ୍ନାଥଟା ଧର୍ମବକ –
ସାଜି ବସିଅଛି କାହିଁକି, କିପରି ? ପଚାରି ଦେଖ !
ପଚାରିଲେ ସିଏ କିଛି କହିବନି, କହିତ ନାହିଁ,
କାଠ, ପଥର ତ ନିର୍ଜୀବ ଚିଜ, ଭାଷା ତା କାହିଁ ?

---

୧ । ପୂର୍ବତନ ମୁଖ୍ୟମନ୍ତ୍ରୀ ୰ ବିଜୁ ପଟ୍ଟନାୟକଙ୍କ ପ୍ରଶାସନକୁ ଏଠାରେ ଲକ୍ଷ୍ୟବସ୍ତୁ କରାଯାଇଛି ।

ଜଗନ୍ନାଥର ହାଲତ୍ ଢିଲା ତ ଦେଉଳ ତଳେ,
ଭୁଷିଡ଼ିବ ଯେବେ ବେପାର ବୁଡ଼ିବ, ମରିବେ ଦଳେ,
ଢିରା ଦେବାକାମ ଆଉ ବେଶିଦିନ ଚାଲିବ ନାହିଁ,
ମନ୍ତ୍ର ପଢ଼ିଲେ ବନ୍ଦ ଦରଜା ଖୋଲିବ ନାହିଁ ।
ଧକ୍କା ନଦେଲେ କବାଟ ଖୋଲେନା, ବସିଲେ ମାଡ଼ –
ଭାଙ୍ଗେ ଭୋଳାର ଭାଙ୍ଗ ନିଶାଟା, ଜାଗଇ ଜଡ଼ ।
ଶ୍ରମହିଁ ସତ୍ୟ, ଶ୍ରମ ହିଁ ପୂଜ୍ୟ, ସବୁ ତ ମିଛ,
ପାଣିକୁ ନଛୁଇଁ ତମେ ଯେଉଁମାନେ ଧରୁଛ ମାଛ,
ଦେଉଳ ଭିତରେ ଶେଉଳ ଶିକାର ସେତିକି ଥାଉ,
"ଚଢ଼େଇ ନଢ଼େଇ", ଭାଙ୍ଗଘୋଟାର ବହୁତ ଦାଉ –
ସହିଛି ମଣିଷ, ବିଜ୍ଞାନ ତାର ଖୋଲିଛି ଆଖି
ଖସିଛି ପଥର, ଧସିବ ଦେଉଳ କେବଳ ବାକି ।

ଗୋଟିଏ ଜଗନ୍ନାଥକୁ ରକ୍ଷା କରିବାପାଇଁ
ତମେ ଯେଉଁମାନେ ପଣ୍ଡା, ପୂଜକ, ଭକ୍ତ ଭାଇ,
ତମେ ଯେଉଁମାନେ ଧର୍ମୀୟଜନ ଚିନ୍ତିତ ତ
ତମେ କି ଦେଖୁନ କେତେ ଶତ କୋଟି ଜଗନ୍ନାଥ,
ନର-ନାରାୟଣ, କେତେ ଯେ ଲକ୍ଷ୍ମୀ କାନ୍ଦେ ବସି
କେତେ ଶତକୋଟି ମନ-ମନ୍ଦିର ପଡୁଛି ଧସି !
ତାର ସୁରକ୍ଷା, ତାର ସଂହତି ପାରିଲେ ହୋଇ
ସମାଜ-ସୌଧ ସୁଦୃଢ଼ ହେବ, ନହେଲେ ନାହିଁ ।

ଜନ-ଉପାସନା ଭିତରେ ରହିଛି ଜଗନ୍ନାଥ
ସେହି ତ ଆଦିମ-ଓଁକାର ଧ୍ୱନି, ସେହି ସେ ଗୀତ ।
ମଣିଷ-ଦେଉଳୁଁ ପଥର ଖସୁଛି, ଛାତିଟା ଚୁନା
ଊର୍ଦ୍ଧ୍ୱେ ତାହାର ସର୍ବନାଶର ଉଡୁଛି ବାନା ।
ସେ ଆଡ଼କୁ ଥରେ ନଜର ପକାଅ, ଫେରାଅ ମୁହଁ,
ଜଗନ୍ନାଥର ଅଙ୍ଗୀକାରକୁ ସଲାମ ଦିଅ ।



ର.କା.
୧ ଜାନୁୟାରୀ, ୯୩
ଭୁବନେଶ୍ୱର

# ଯୁଗାବ୍ଧି ପରେ...

ରିକ୍ସା ତମର ଏଇଠି ଅଟକି ଥିଲା
ନଥିଲା ବେଳେ ମୁଁ, ବାରଟି ବର୍ଷପରେ,
ସ୍ମୃତିର ମଶାଣି ପାଖକୁ କାହିଁକି ଭଲା
କିଆଁ ଆସିଥିଲ, ମୁଁ ତ ଆଜି ବହୁଦୂରେ ।

ବାରଟିବର୍ଷ ତଳର ମଧୁର ସ୍ମୃତି
କବର ଲଭିଛି ଏ ମୋ ହୃଦୟର ତଳେ,
ଅତୀତରେ କବି ଲେଖିଥିଲି ଯେଉଁ ଗୀତି
ଠିଆ ହୋଇ ସେବେ ଲୁହର ଦରିଆ କୂଳେ;

ପ୍ରତି ପଦପାତେ ଆଜି ପଡୁଥିବ ମନେ
ଆଗରେ ପଛରେ କେହି ହେଲେ ଜଣେ ନାହିଁ
କାହିଁ ଗଲେ ସବୁ ଶଠ, ଲମ୍ପଟ ମାନେ ?
ଚିହ୍ନାଇଲେ ବି ତମେ ଚିହ୍ନିଲ ନାହିଁ !

ଆହତ ମନୁ ମୋ ଆଜି ବି ରୁଧିର ଝରେ
ଝରିବ, ଯେ ଯାଏଁ ଭେଟିବି ମୁଁ ଚିତାନଳ,
ଛାତିର ରକତ ଲେଖନୀମୂନେ ମୋ ଝରେ
ହୃଦ-ହ୍ରଦେ ମୋର ବେଦନାର ଶତଦଳ ।

ରିକ୍ସା ତମର କାହିଁକି ଅଟକି ଥିଲା ?
ନଥିଲାବେଳେ ମୁଁ ''ନିସଙ୍ଗ ନିବାସ''ରେ,
ଫେରିଥିଲ ତମେ, ଦୁଆରେ ପଡ଼ିଛି ତାଲା
କାରେ ଖୋଜୁଥିଲ ସୁଦୂରିକା ନିକଟରେ ?

ଲେଖିଥିଲି ସେବେ, ପଢ଼ିଅଛ ତମେ ନାରି !
''ରିକ୍ସା ତମର ଅଟକିବ ନିଶ୍ଚୟ''
ଏ ଭିତରେ ଗଲା ବାରଟି ବର୍ଷ ଚାଲି
ଅନୁତାପର କି ଘଟିଛି ସୂର୍ଯ୍ୟୋଦୟ ?

ପଢ଼ ସେ କବିତା ଅତୀତକୁ ମନେ ପେରି
''ପ୍ରଣୟ ସତ୍ୟ, ଜୀବନର ପ୍ରତିପାଦ୍ୟ'' ।
ବୁଦ୍ଧିହୀନା ଗୋ ସବୁ ତ ଦେଇଛ ସାରି
''ରିକ୍ସା ତମର ଅଟକିବା ପାଇଁ ବାଧ ।''

ପୃଥିବୀ ଘୁରିଛି ସୂର୍ଯ୍ୟର ଚାରିପାଖେ
ଥରେ ଅଧେ ନୁହେଁ, ନିର୍ଘାତ ବାରଥର,
ଠିଆ ମୁଁ ହୋଇଛି ଏକାକୀତ୍ୱର ବାଁକେ
କାହିଁକି ଖୋଜୁଛ ଆସି ମୋତେ ବାରବାର ?

ତମ କୋଳେ ମୋର ପୌରୁଷ-ନେତ ଉଡ଼େ
ତମକୁ ପଚାରେ ମୋର ବୀର୍ଯ୍ୟର ଭାଷା,
ତା'ରି ଶୈଶବ ପ୍ରଶ୍ନର ଭାଷା କେଡ଼େ –
କରୁଣ ଅଥଚ ଯନ୍ତ୍ରଣା-ବିଷ ମିଶା !

ଜାଣିଥିଲି କବି ବାରଟି ବର୍ଷ ପରେ
ରିକ୍ସା ତମର ଅଟକିବ ଦିନେ ଆସି,
ଖୋଜିବ ତ ମୋତେ ଉଦାସ-ଦ୍ୱିପ୍ରହରେ
ହୋଇଛି ସେଦିନ ଉପଗତ ତମ ଆସି ।

ହଠାତ୍ ଯେଦିନ ହୋଇଯିବ ଚାରିଆଖି
ଦେଖିବି ତମକୁ ପକାଇ ଦୀର୍ଘଶ୍ୱାସ,
ମରିଯାଇଥିବା ଆବେଗକୁ ଦେବ ଦେଖି
ଅତୀତରେ ଯାର କରିଛ ସର୍ବନାଶ ।



ର.କା.
''ନିଃନି''
୨ ଅକ୍ଟୋବର, ୯୩
ରାତି ୧୦ଟା

# ଦୀପଶିଖା

ଧୂମକେତୁ କେବେ ଧ୍ରୁବ ପାଲଟେନା
ଭଗ୍ନ-ଗ୍ରହାଣୁ ପୁଞ୍ଜ
ଅମଙ୍ଗଳ ସେ ଅଶୁଭ, କରାଳ
ବିଭତ୍ସ ତାର ଲାଞ୍ଜ ।

ମୁଣ୍ଡରେ ତାର ଧୂଳି, ଧୂଆଁ, ଗ୍ୟାସ୍
ଭରପୁର କୂଟବୁଦ୍ଧି
ପଚ଼ମାନ ତାର ଆତ୍ମାଟା ସଦା
ତାର କି ଆତ୍ମଶୁଦ୍ଧି ?

ତା ଭିତରୁ ତମେ ଜଣେ,
ଦୂରୁଁ ଦେଖି ମୋତେ ତମେ ଆସିଥିଲ
ପ୍ରବଳ ଆକର୍ଷଣେ ।
ଆସିଲ ତ ସିନା, ରହି ପାରିଲନି
ଯାହା ଥିଲା ଦେଇ ସବୁ,
ଧୀରେ, ଅତି ଧୀରେ ହଟିଲ ପଛକୁ
ମୋତେ ତ ନକରି କାବୁ ।

ତମ ଚରିତ୍ର ନଥି, –
ଛାଡ଼ି ଯାଇଛ ମୋ ମନ-ମନ୍ଦିରେ
ଆଗପରି ହୋଇ "ସତୀ" ।
ପ୍ରତାରଣାକୁ ମୋ ଚିହ୍ନିବା ପରି
ଆଖି ଦୁଇଟା ତ ପଟୁ,
ମୁଁ ତ ଜାଣିଥିଲି ତମେ ଫେରିଯିବ
ଏ ମୋର ଜୀବନ-ବାଟୁଁ ।
ବଳେ ବଳେ ଆସି ଦେଇଥିଲ ଧରା
ଆଗୋ ଧୂମକେତୁ ବାଳା !
ଜାଣି ତ ନଥିଲ ଅଜର, ଅମର
ମୁଁ ତ ସେହି ଧ୍ରୁବତାରା ।

ହତଭାଗୀ ଜ୍ୱାଳାମୁଖୀ,
ଶାଶ୍ୱତ ମୋର ଛବି ଓ ଆଲୋକ
ଯେତେବେଳେ ଦେଲ ଦେଖି;

ପାଲଟିଲ ତମେ କ୍ଷୁଦ୍ର, ବାମନ
ରୂପ ପଡ଼ିଗଲା ଧରା
ତମ କାମନାର କୋଟର ସାପକୁ
ଧରି ମୁଁ ପାରିଛି କେଳା ।

ନିଷ୍ପାପ-ମନ ନେଇ,
ତମେ ଆସିଥିଲେ ହୋଇତ ଥାନ୍ତ
ପ୍ରଣୟର ନୀଳକଣ୍ଠ ।

ହୋଇ ତ ଥାନ୍ତ ପୁଣ୍ୟତୋୟା ଗୋ
ଶାଶ୍ୱତୀ, ମାନନୀୟା,
ତମେ ତା ହେଲନି, ହୋଇ ପାରିଲନି
କବିର ଗୋପନପ୍ରିୟା ।

ଯାଅ, ତମେ ଯାଅ ତମ ଆତ୍ମାର
ସଦ୍‌ଗତି ହେଉ ନାରି !
ଚିନ୍ତା କରନା କେବେ ଖୋଲିବିନି
ତମ ଫାଇଲ୍‌ର ଡ଼ୋରି ।

ସାରାଟା ଜୀବନ ମୋତେ ଚାହିଁ ଦେଲେ
ମୁହଁଟା ପଡ଼ିବ କଳା,
ନୈତିକତାର ଊଣା ହେଲେ ମୁଁ
ଏହିପରି ଦଶା ପରା ।

ଇସ୍, କି ସର୍ବନାଶ ! —
ଆପଣାର ଆପେ କଲ ତମେ ଆସି
ମୋତେ କରିବାକୁ ମେଷ —
ତମେ ଭାବିଥିଲ, ନିଜେ ତ ହୋଇଲ
ଶେଷରେ ଖଦ୍ୟୋତିକା,
ଗ୍ରାସିଲା ତମକୁ ହୀନମନ୍ୟତା
କାରଣ ମୁଁ ଦୀପଶୀଖା ।



ର.କା.
୧ ଫେବୃୟାରୀ, ୧୯୯୭
ସନ୍ଧ୍ୟା

# କାମନା

ମୁହଁରୁ ତ ମୋର ଛଡ଼ାଇ ନେଇଛ

କ୍ଷୁଧାର ଅନ୍ନ ଥାଳି,

ସମ୍ମାନ ମୋର ଭାବମୂର୍ତ୍ତୀକୁ

ପାଦରେ ଦେଇଛ ଦଳି ।

ଆଖିରୁ ତ ମୋର ଛଡ଼ାଇ ନେଇଛ

ଶାନ୍ତିର ଯେତେ ନିଦ,

ଓଠରୁ ଛଡ଼ାଇ ନେଇଛ ତ ହସ

ଦେଇଅଛ ଅପବାଦ ।

ଆଉ କିଛି ନାହିଁ ବାକି,

ଏ ମୋର କୁଟୀରେ ତମେ ବିଷଧର

ଶୋଇଅଛ ଜାକିଯୁକି ।

କ୍ରମାଗତ ତମେ ଫୁତ୍କାର କର

ମାର ନିଜ ବିଷଚୋଟ,

ଶୋଷ ମୋ ରକ୍ତ, ହାଡରୁ ମାଉଁସ

ଛେଲା ଛେଲା କରି କାଟ ।

ମୋ ଆଖି ଆଗରେ ମୋ ଚିତା ସଜାଡ଼

ମୁଁ ତ ଜୀଇ ଥାଉ ଥାଉ,

ଅସଭ୍ୟ, ପଶୁ, ଶଠ, ଧଡ଼ିବାଜ୍

ତମ ଗୁଣ ଗାଉ ଗାଉ, —

ସରିଯିବ ଆୟୁ, ପଶ୍ଚିମ ବାୟୁ

ବାଜିଲାଣି ଆସି ଦେହେ,

ପରୱା କରିନି, ଆସିଥିଲି ଯେବେ

ଯିବି ତ ନିଶ୍ଚୟ ହେ !

ଉପରେ ଓ ତଳେ, ଘରେ ଓ ବାହାରେ

ଚଲାପଥେ ଲଢ଼ି ଲଢ଼ି,

ପରିଣତି ମୋର ଜାଣେ ମୁଁ ତ ଜାଣେ

ପଡ଼ିବି ତ ଦିନେ ଝଡ଼ି ।

ମଣିଷ ଆଖିରେ ଲୁହ ଦେଖି ଦେଖି ତରାଳାଇଛି ମୁଁ ଲାଭା
ଭାଙ୍ଗିଛି ବହୁ ତୈଳଭାଣ୍ଡ, ତୋଷାମୋଦକାରୀ ସଭା ।
ଅନାଥ ଶିଶୁର ଛବି ମୋ ହୃଦୟେ ଆଣିଛି ଘୂର୍ଣ୍ଣିଝଡ଼
ମାନିନି ମୁଁ କିଛି ଆଇନ୍-କାନୁନ୍, ମାନିନି ବନ୍ଧବାଡ଼ ।
ଅଜ୍ଞାତବାସ, କାହାଗହ୍ୱର, ରାଜରୋଷ, ହାତକଡ଼ି,
ସବୁରି ଉପରେ ଜିରାଫ୍-ଗ୍ରୀବା ମୋ ସକାଳ ସୂର୍ଯ୍ୟ ପରି ।
ମରିଛି-ଜୀଇଛି ପ୍ରତି ପଦେ ପଦେ ରକ୍ତବୀର୍ଯ୍ୟ ପ୍ରାଣ
ଯେତେକାଳ ଏଇ ଶ୍ୟାମଳ-ଗ୍ରହରୁ ହୋଇନାହିଁ ଅବସାନ –
ମଣିଷ ତିଆରି ଶୋଷଣ, କଷଣ, ଅଭାବର ଛାୟାଛବି
ମରୁଥିବି ପୁଣି ଜନ୍ମୁଥିବି ମୁଁ ମହାବିପ୍ଳବ କବି ।।

ଅଦ୍‌ଭୁତ ଏକ ଧାତୁରେ ଗଢ଼ା ମୁଁ

ନିଜେ ଅଦ୍‌ଭୁତ ଧାତୁ,

କେତେବେଳେ ମୁହିଁ ମଙ୍ଗଳମୟ

କେତେବେଳେ ଧୂମକେତୁ !

ମୁଁ ଯେ ବଶିଷ୍ଠ ସଦା ଅତିଷ୍ଠ

ଜୀବନ ତମାମ ମୋର,

ତାର ଇତିହାସ ଅକୁହା କାହାଣୀ

ସେ କଥା ଜାଣିଛି ଜଡ଼,

ସ୍ଥାବର ଓ ଜଙ୍ଗମ,

ସେ କଥା ଜାଣିଛି ଉଦାର ଆକାଶ

ଜାଣିଛି ବିହଂଗମ ।

ସେକଥା ଜାଣିଛି ପଥର ପ୍ରାନ୍ତ
ସବୁଜ ଘାସର ସଭା,
ଜାଣେ ନଦନଦୀ, ମରୁ-କାନ୍ତର
ସନ୍ଧ୍ୟା, ରଜନୀ, ଦିବା ।

ମୋ ଯଉବନର ଭାବପ୍ରବଣତା 'ସୃଷ୍ଟି' କରିଛି ଯାହା,
ସେହି 'ସୃଷ୍ଟି'ର ନିର୍ଯ୍ୟାତନ ମୁଁ ସାପପରି ସହେ ଆହା !
ନାହିଁ ଚିତ୍‌କାର, ନୀରବ-ଦହନ, ନିରୁପାୟ ହୋଇ ସହେ,
ମରିବି ପାରେନା, ବଞ୍ଚିପାରେନା, ଲୁହ ତ ଜମାଟ୍ ହୁଏ ।

ଆତ୍ମୀୟତାର ଛୁରୀ,
ମୋହରି ବୀର୍ଯ୍ୟ ମୋରି ବିରୁଦ୍ଧେ ପ୍ରବଳ ଅତ୍ୟାଚାରୀ ।
ଭଦ୍ରତା, ଦୟା ସାଥିରେ ମୋ କରେ ନିତି ଦରକଷାକଷି
ବେଦନାର ବୀଣାପାଣି ମୋ କାନ୍ଦେ, ଦିନଯାଇ ଆସେ ନିଶି ।
ଆତ୍ମାରୁ ଅଧେ ଜଳିତ ଯାଇଛି, ବାକି ଅଧେ ଆଜି ଜଳେ
ଏଇ ଜ୍ୱାଳା ମୋର ପ୍ରତିଭାକୁ ଜାଳେ, ଠେଲେ ମୃତ୍ୟୁର କୋଳେ ।
ସହିତ ହେଉନି, କହିତ ହେଉନି, ରହିତ ହେଉନି ଆଉ
ନାଗ ମୁଁ ଗିଳିଛି ଗନ୍ଧମୂଷିକ, ଅସହାୟତାର ଦାଉ ।
ପ୍ରତିକାର ଯଦି କରେ,
ତାହେଲେ କେବଳ ଜନେ ତ ହସିବେ, ସେହିକଥା ଭାବି ମରେ ।

ରକ୍ତମାଂସ ଦେହର ମୀନାରୁ
ଶିଳା ଖସିବାର ବେଳ,
ଆଉ କେଇଦିନେ ତତ୍ତ୍ୱ କେ ନେବ
ବୃଦ୍ଧ ଏ କବିଟିର ?
କେହି ଆସିବେନି, ଆସିବାର ନାହିଁ
ସବୁ ତ ଗଲେଣି ଚାଲି,
ଯାହାଥିଲା ମୋର ସବୁ ଲୁଣ୍ଠିତ
ଭଣ୍ଡାର ପୁରା ଖାଲି ।

ଖାଲି ଅଛି ''ନାହିଁ'', ଅଛି ଶୂନ୍ୟତା
କେବଳ ନିସଙ୍ଗତା,
ମୋର ଅନାଗତ ଚିତାନଳ କୁହେ :
''ତୋର ହୃଦୟର ବ୍ୟଥା –
କେହି ବୁଝିନାହିଁ, କେହି ବୁଝିବେନି
ବୁଝେ ମୁଁ କେବଳ ତାହା,
ଆରେ ପଦାତିକ, ଶବାଧାରେ ନୁହେଁ
ଚାଲି ଚାଲି ଚାଲି ଆ !
ତୁହି ହୁତାଶନ, ମୁଁ ଯେ ତୋର ଶିଖା
ମୁହିଁ ତୋର ପ୍ରିୟତମା
ମୋରି ସତ୍ତାରେ ତୋହରି ମିଳନ –
ହେଲେ ଯାଇ ହେବ ସିନା, –
ଆଲୋକୋଜ୍ଜ୍ୱଳ-ଉଷାର ଶଂଖ
ବାଜିବ ରାତ୍ରି ଶେଷେ,
ତୁହିତ କାବ୍ୟ, ମୁଁ ତୋର ନାୟିକା
ଜ୍ୱଳନର ଦେଶେ ଦେଶେ ।''

ଏଇ ଆଗ୍ନେୟ ପ୍ରେମ-ସଂଭାଷେ ଜୀବୀତ ଅଛି ମୁଁ କବି,
ରୋଗଟା ନକରୁ ମୋତେ ଧରାଶାୟୀ, ଶବାଧାରେ ଏଇ 'ରବି'
ଶୋଇବା ଆଗରୁ କୋଳ କରୁ ମୋତେ ଅଗ୍ନିର ପ୍ରିୟତମା,
ଏଇ ମୋ କାମନା, ପୂର୍ଣ୍ଣଛେଦ ମୋ, ନୁହେଁ ବି ଗୋଟିଏ କମା ।



ର.କା.
''ନିଃନି''
୧୩ ନଭେମ୍ବର, ୯୧
ସନ୍ଧ୍ୟା

# ଆଜି

କୋଟି କୁଡ଼ିଆର ନିଭିଲା ଚୁଲିରେ

ଅଗ୍ନିଶିଖା

ଆଜି ଯେତେବେଳେ

ଦେଇନି ଦେଖା,

ଆଜି ଯେତେବେଳେ ଅପସଂସ୍କୃତି

ପୁଚ୍ଛ ପିଟେ,

ମହାଭଭୂଗୋଳର

ରାସ୍ତାଘାଟେ

ଘରେ ଓ ବାହାରେ

ହୃଦୟ ଫାଟେ ।

ଉଦୟ-ରବିର ମୁଖମଣ୍ଡଳେ

ଅସ୍ତମେଘ,

ଇତିହାସଚକ ପଛକୁ ବୁଲୁଛି

ପ୍ରବଳ ବେଗ !

ସ୍ୱୀକୃତି ପାଏ ବିକୃତି ଯେତେ

ପଶୁତ୍ୱର,

ଆଜି ଯେତେବେଳେ ମହିମା ବଢୁଛି

ଖାସୁତ୍ୱର,

ପଚମାନ ଯେବେ ଦେଶ ଓ ଜାତିର

ଅନ୍ତ୍ରନାଡ଼ି,

ବୁଲେ ଧଡ଼ିବାଜ୍ ନୈତିକତାର

ମନ୍ତ୍ରପଢ଼ି ।

ଆଜି ଯେତେବେଳେ ପିଶାଚ କରୁଛି
ଶବକୁ ଚୋରି,
ପ୍ରତି ପଦପାତେ ମୁଣ୍ଡ ଉଠାଏ
ଅତ୍ୟାଚାରୀ,
ହତ୍ୟାକାରୀ ।
ମାନବବାଦର ବିରୋଧେ ବିରୋଧେ
ଖଡ୍‌ଗ ଶାଣେ,
ସ୍ୱାଧୀନ ଜାତିକୁ ଆଜି ଯେତେବେଳେ
ଅଧୀନେ ଆଣେ,
ଠିକ୍ ସେତେବେଳେ ଆମେ ଓଡ଼ିଶାର
କାବ୍ୟକାର,
ଏକାଠି ହୋଇଛୁ ଆକାଶବାଣୀରେ
ସନ୍ଧ୍ୟାବେଳ ।
ଗତ ଅତୀତର ସ୍ୱାଧୀନତା ଦିନ
ସ୍ମରଣ ପାଇଁ
ବଢ଼ିଛି ନଈ
ବନ୍ୟା ଜଳରେ ଭାସୁଛି ମଣିଷ
ରାହା ତ ନାହିଁ ।
ପଛେ ପଛେ ତାର ଆସୁଛି ମରୁଡ଼ି
ପଙ୍ଗପାଳ,
ଦୁର୍ଭିକ୍ଷର ମଧୁଶଯ୍ୟାରେ
ଚାଲିବ ଖେଳ ।
ଏପାରି ସେପାରି ଭୋଅଟ ବେପାରୀ
ନୋଅଟ ଭେଳା,
ଉପରେ ସବାର ଚୋରା କାରବାରୀ
ଚପାତି ବାଲା ।
ଫୁଲ-ଶାଗୁଣାର ଅଣ୍ଡା ଫୁଟିବ
ବୃକ୍ଷଶାଖେ,
ଶ୍ୱାନ ଶୃଗାଳକୁ ଭୋଜନ ମିଳିବ
ମହାନ ସୁଖେ ।

ମୁକ୍ତିବିହୁନେ ସ୍ୱାଧୀନତା ସିନା
ଅର୍ଥହୀନ,
ରେଶନ୍‌କାର୍ଡ଼ରେ ମୁକ୍ତି ମିଳେନା
ଉପାର୍ଜନ –
କରିବାକୁ ହୁଏ ସଂଘାତେ ଆଉ
ଅଗ୍ରପଥେ,
ବସିବାକୁ ହୁଏ ଝଡ଼ର ମଥାନେ
ଘୂର୍ଣ୍ଣିରଥେ ।
ଆଜି ସନ୍ଧ୍ୟାରେ ତାହାରି ଶପଥ
ନେବାର ଦିନ,
କରିବା ପାଇଁକି ମାନବବାଦର
ସଂସ୍ଥାପନ ।



ର.କା.
୨ ଅଗଷ୍ଟ ୧୯୯୪
ସନ୍ଧ୍ୟା

# ସ୍ମୃତିର ସମାଧି

॥ ୧ ॥

ମୋତେ ସୁମରଣା କରନାହିଁ ନାରୀ
ତମେ ସଦା ସୁଦୂରିକା,
ତମ ପାଖେ ମୁହିଁ, ମୋ ପାଖରେ ତମେ
ମରୀଚିକା, ମରୀଚିକା ।
ତା କେବେ ହୁଏନା ତୃଷାର ଜଳ
ନୀରବ-ଦହନ ଖାଲି ଅନ୍ତର
ସମୟର ସୁଅ ଅତୀବ ପ୍ରଖର
ଭୁଲିଯାଅ, ଯାଅ ଭୁଲି,
ସ୍ୱପ୍ନ ହେବନି ମୋଟେ ବାସ୍ତବ
ପଥ ଦୁସ୍ତର ଭାରୀ ॥

॥ ୨ ॥

ବହୁ ଅବରୋଧ, ବାଧାର ପ୍ରାଚୀର
ଆମରି ଭିତରେ ଠିଆ,
ମନେ ମନେ ସିନା ତମ-ମୋ ଭିତରେ
ହୃଦୟର ଦିଆନିଆ ।
ଏଠି ବସି ବସି ଭାବେ ମୁଁ ସଜନୀ
ତମେ ଆନମନା ସେଠି ଏକାକିନୀ
ଇଚ୍ଛା ଥିଲେ ବି ଆସିପାରିବନି
ଆସିଲେ ଘଟିବ ମନ୍ଦ,
ବାସ୍ତବତାର ଭାଷା ତ କଠୋର
ଟିକିଏ ବି ନାହିଁ ଛନ୍ଦ ।

॥ ୩ ॥

ତମ ପାଇଁ ନାହିଁ ଏଠି ସାମଗ୍ରୀ
ସରଳ ଜୀବନଧାରା,
ଏଠି ତ ଗରଳ ଭାରୀ ଗାଢ଼ନୀଳ
କାଳକୂଟ ବିଷଜ୍ୱାଳା ।
ଦୁନ୍ଦୁଭି ସମ ବାଜେ ମୋ ହୃଦୟ
ଏଠି କ୍ରମାଗତ ଜୟ-ପରାଜୟ
ରୋମାଞ୍ଚ ଯେତେ ପ୍ରେମ ଓ ପ୍ରଣୟ
ସବୁ କିଛି ରୂପକଥା,
ତେଣୁ ଗୋ ସରଳା, ରଖ ତମ ମାଳା
ତମରି ଅକୁହା କଥା ।

॥ ୪ ॥

ଆଉ ଲେଖ ନାହିଁ, ପଢ଼ିବାର ପାଇଁ
ସମୟ ଅଭାବ ଭାରି,
ତମର ଆସିବା ଯେତେବେଳେ ଥିଲା
ଥିଲା ଅତି ଦରକାରୀ;
ହାତରେ ଥିଲା ମୋ ତାଜା-ଫୁଲଧନୁ
ଉଦ୍ଦାମ ମୋର ଯଉବନ-ବନୁ –
ତମ ପାଇଁ ମୋର ବାଜୁଥିଲା ବେଣୁ
ସେବେଳେ ଦେଲନି ଦେଖା,
ଆଜି ତମେ ମୋର ସ୍ମୃତିର ସମାଧି
ପାଠିକା ମୋ ମାଳବିକା !



# ବ୍ରହ୍ମ-ପ୍ରେମ-ଶ୍ରମ

ବ୍ରାହ୍ମଣ କୁହେ—ଜଗତ ବ୍ରହ୍ମମୟ
ସାଧୁ-ସନ୍ୟାସୀ ପ୍ରଚାରଇ ପ୍ରେମବାଣୀ,
ଯା ଭିତରେ ଘଟେ ଜୀବନର ପରାଜୟ
ଝିଣ୍ଟିକା ଦଳେ ଛକି ବସେ ରାଜବଣୀ ।।

ପ୍ରେମ ତ ପଣ୍ୟ, ଛଳନାର ଏକ ଛବି
ବ୍ରହ୍ମ ମିଥ୍ୟା, ଶ୍ରମହିଁ ସତ୍ୟ କଥା,
ପ୍ରେମପାଇଁ ମଲା ବାଲ୍ମିକୀ ମହାକବି
ପ୍ରେମର ଅର୍ଥ : ଭୀମ-ପ୍ରତାରଣା-ବ୍ୟଥା ।।

ଶ୍ରମ ବିନା ଯହିଁ ଆହାର ଯୁଟେନା ବାବୁ !
ଶ୍ରମିକର କିଛି ଧର୍ମ ନ ଥାଏ, ନାହିଁ,
ଧର୍ମଘଟହିଁ ଧର୍ମ ତାହାର ସବୁ
ସଂଗ୍ରାମ ଛଡ଼ା ପଥ କିବା ଅଛି କାହିଁ ?

ତେଣୁ ଜଗତଟା ଶ୍ରମମୟ ଇତିହାସେ
ଇତିହାସ ମାନେ କଠୋର-ବାସ୍ତବତା,
ଆକାଶଟା ଭାରି ମଣିଷ ଦୀର୍ଘଶ୍ୱାସେ
ଶୁଣାଅନା ଆଉ ବ୍ରହ୍ମ-ପ୍ରେମର କଥା ।।



''ନିଃନି''
୨୬ ସେପ୍ଟେମ୍ବର ୧୯୮୫
ରୋଗଶଯ୍ୟା (ରାତି ୧୦ଟା)

# ଏମିତି ବି ହୁଏ !

॥ ୧ ॥

ଗୋଟାଏ ପାଗଳ

''ବାଘ ଆଁରେ ପିକ୍‌ନିକ୍‌'' କରୁ କରୁ

ବାଘ ତାକୁ ଜଳଖିଆ କରି

ଝାଡାଫେରି ଦେଇଥିଲା ।

''ସାପ ଗାତରେ ସକାଳ'' ହେବା ଆଗରୁ

ପଶି ଯାଇଥିଲା ସୁବିଧାବାଦର ବର୍ଷାପାଣି ॥

॥ ୨ ॥

''ପ୍ରଗତିବାଦୀ'' ଆଧୁନିକ ''ଅନ୍ଧ ଭୀମଭୋଇ''

ଦେଖେ ଆଖିଖୋଲି,

ବିଷୋଦ୍‌ଗାର ନ କରି ଭୁଜଙ୍ଗ

ସୁଚତୁରେ କରିଛି ଦଂଶନ,

ବିଂଶସୁତ୍ରୀ ଖତିୟାନ୍‌ର ଏହାହିଁ ମହିମା !

॥ ୩ ॥

ରାଜନୀତି ଭିତରେ ଯେପରି, ''ପଲଟିକସ୍‌''

ଚାଲିଛି ପୁରାଦମ୍‌ରେ

ସେଥିରୁ ମୋର ଆଶଂକା ହୁଏ;

ତମାମ୍ ଭାରତବର୍ଷରେ ''ରାମରାଜ୍ୟ''

ହୁଏତ ହୋଇଯାଇ ପାରେ ! ?

ଦେଶର ସବୁ ପ୍ରତିକ୍ରିୟାଶୀଳମାନେ
ରତିକ୍ରିୟାର ମାଧ୍ୟମ ଦେଇ
ହଠାତ୍ "ପ୍ରଗତି" ଆଡ଼କୁ ହୁଏତ
ଧାବିତ ହୋଇପାରନ୍ତି !

॥ ୪ ॥

ପରିସ୍ଥିତି ଅତ୍ୟନ୍ତ କରୁଣ ।
ତା ନ ହେଲେ କୁଳପତିରୁ ଦଳଭୁକ୍ତି,
ଡିଲର୍‌ସିପ୍‌ରୁ ଲିଡ଼ର୍‌ସିପ୍,
ନକ୍‌ସଲ୍‌ପନ୍ଥୀରୁ ରେଗାନ୍‌ପନ୍ଥୀ,
ରକ୍ତରୁ ଯୋଗ,
ଯୋଗରୁ ଭୋଗ,
ତା ପରେ
ନିର୍ଘାତ ଗାଡ଼ିଫେଲ.....
ମହା ବୈରାଗ୍ୟ ।



# କାଲି

କାଲି ମୋର ଜନ୍ମଦିନ

ସ୍ମରଣୀୟ ବସନ୍ତ ପଞ୍ଚମୀ,

କେତେବର୍ଷ ହେଲା ମୋତେ

କେ କହିବ ? ନାହିଁ ତ ଜନନୀ ।

ନାହାନ୍ତି କେ ବାଲ୍ୟସାଥି

ଜନ୍ମମାଟି ଦୂରେ, ବହୁ ଦୂରେ,

ସବୁ ତ ବିଲୁପ୍ତ ଆଜି

ଅତୀତର ଅତଳ ଗହ୍ୱରେ ।

ସଂଗହୀନ-ପଦାତିକ

ସମ୍ମୁଖରେ ଡାକେ ରଣାଙ୍ଗନ

ଚାରିଦିଗେ ଶତ୍ରୁଥାଟ

କେଉଁମାନେ ଆତ୍ମୀୟ ସ୍ୱଜନ ?

କେହି ତ ନାହାନ୍ତି କାହିଁ

ଅଛି ଖାଲି ହାତେ ରାଇଫଲ୍,

ଉପରେ ମୋ ଅପରାହ୍ନ -

ଆକାଶର ନିସ୍ତେଜ ପ୍ରାନ୍ତର ।

ପଛେ କାଶେ ଧୀରେ ଧୀରେ

କୁଳବୃଦ୍ଧ ଇତିହାସ-ବୁଢ଼ା,

ଅକୁଳୁଷ ସତ୍ୟ ସେ ଯେ

ତା ଉଦ୍ଧତ-ଶିଖରର ଚୁଡ଼ା –

ମୋତେ କରେ ଆଶୀର୍ବାଦ

ଭରିଦିଏ ଅସ୍ତ୍ର ମୋ ତୂଣୀରେ,

ଆତ୍ମାର ଆତ୍ମୀୟ ମୋର

ସେହି ଏକା ଆସେ ମୋ ପଛରେ ।

ବେପର୍ବାୟ, ମୃତ୍ୟୁହୀନ
ଅଜେୟ ସେ ଚିର ଗତିଶୀଳ,
ତାରି ଆଶୀର୍ବାଦେ ମୋର
ଗର୍ଜି ଉଠେ ଭରା ରାଇଫଲ୍ ।

ଅଶିବ ଓ ଅମଙ୍ଗଳ ସାଥେ,
ଆଜନ୍ମରୁ ଯୁଦ୍ଧ ମୋର, ରକ୍ତମଖା ଶେଷହୀନ ପଥେ ।
ଡାକେ ମୋତେ ଶହୀଦତ୍ୱ, ସନ୍ଧ୍ୟା ମୋତେ କରେ ଆମନ୍ତ୍ରଣ
ନୀଡ଼କୁ ଫେରିବେ ଆଉ ଟିକେ ପରେ ଦଳ ବିହଙ୍ଗମ ।
ସୂର୍ଯ୍ୟ ଯିବ ଅସ୍ତାଚଳେ, ଆକାଶରେ ଶିଶୁଚନ୍ଦ୍ର-ଦାଆ –
ହସିବ ବଙ୍କିମ-ହସ, ନିଶାଚର ଫୁଲାଇବେ ବାହା ।
ନଥିବି ମୁଁ ପଦାତିକ-କବି,
ଥିବ ରହି କାବ୍ୟ ମୋର, ଭାଷା, ଛନ୍ଦ, ଲୋହିତ-ଭୈରବୀ –

ଆଗାମୀ ଉଷାର,
କୋଷବଦ୍ଧ ହୋଇଥିବା ସୂର୍ଯ୍ୟର ସେ ଦୀପ୍ତ ତଲୱାର,
କୋଷମୁକ୍ତ ହେବ ଯେବେ, ସତ୍ତା ମୋର ଥିବ ତା ସହିତ,
ଲାଲେ ଲାଲ୍ ପୂର୍ବାକାଶ, ସେହି ମୋର ପତାକା ଲୋହିତ ।
ସେହି ସିନା ମୋର ରୂପାନ୍ତର,
ପଦ୍ଧତି ମୋ ଦ୍ୱନ୍ଦ୍ୱାତ୍ମକ, ମୁଁ ଚେତନା ସତ୍ୟ ଓ ସାମ୍ୟର ।

ଜୀବନରୁ ଅନ୍ତ ହେଲା କାଲିଠାରୁ
ପର୍ଷଟିଏ ପୁଣି,
କାଲିଠାରୁ ଶୁଣିବି ମୁଁ
ନୂଆ ନୂଆ ଶତ୍ରୁ ପଦଧ୍ୱନି ।
ନୂଆ ନୂଆ କ୍ଷତମୁଖ ଦେଖା ଦେବ
ଏ ମୋର ଅନ୍ତରେ
ନୂତନ ଜ୍ୱାଳାର ମାଳା ଲମ୍ବିବ ତ
ଆସି ମୋର ଗଳେ ।

ଆଗୋ ମୋର ଭାଷାର ଭାରତି !
ଚେତନାର ବହ୍ନିଶିଖା କାଲିଠାରୁ ପ୍ରଜ୍ୱଳିତ ଅତି –
କର କର, ଦିଅ ମୋତେ ନୈତିକ-ସଂଭାର,
ତଳେ ମୁଁ ନ ଥୁଏ କେବେ ଦୁର୍ଜୟ ମୋ ଭାରା-ରାଇଫଲ ।
ଆଗୋ ମୋର କାବ୍ୟଦେବି, ନୂତନ ଛନ୍ଦରେ,
ଆସ ତମେ ଛନ୍ଦୋମୟି, ବିଦ୍ରୋହିଣୀ ଆସ ଅଭିସାରେ !

ମୋ କଲମେ, ମୋ ମସୀ ରେଖାରେ
ଦ୍ୱାଦଶ ରବିର ତେଜେ ଜଳ ତମେ ସହସ୍ର ଶିଖାରେ ।
ଏଇ ଭିକ୍ଷା ମାଗେ ମୁହିଁ ଜନ୍ମଦିନେ ପଦାତିକ କବି,
ରକ୍ତର ପ୍ରଣତି ଘେନ ଆଗୋ ମୋର ରକ୍ତକେଶୀ ଦେବି !



ର. କା.
୩ ଫେବୃୟାର, ୧୯୯୫
ମଧ୍ୟରାତ୍ରି

# ଦିନ ସରିଆସେ

ଚାରି ଦଶନ୍ଧି ବାଲାଣି ବିତି
ସାରସ୍ୱତର ଶିବିରେ ମୋର
ବ୍ୟଥା ଓ ବେଦନା ଛନ୍ଦ, ଯତି
ଭାଷାର ଭାରତୀ, ତାହାରି ସ୍ୱର,
କାବ୍ୟଦେବୀର ନୂପୁର-ନାଦ
ବାକ୍‌ଦେବୀ-ବାକ୍‌ଶକ୍ତିମୟୀ,
ଦେଇଛି ସେ ମୋତେ ଅଗ୍ନିବେଦ
ଭୁଲିଛି ଆହାର, ନିଦ ତ ନାହିଁ ।
ସଂଗହୀନ ମୁଁ ପାନ୍ଥ ଏକା
ଜୀବନ ହୋଇଛି ରଙ୍ଗହୀନ,
ଦୀପ ନିଭିଗଲେ, ଜଳିଛି ଶିଖା
ମଶାଲ ମୋ ତେଜ ଉଦ୍‌ଗୀରଣ —
କରିଛି, ମୋ ବାହା ଖଡ୍‌ଗବାହ୍ନି
ମୁଣ୍ଡ ଉପରେ ରକ୍ତମେଘ
ସାମ୍ୟ, ସମତା, ଶାନ୍ତିପାଇଁ
ଡ଼ାକିଛି ତ ମୋତେ କ୍ରାନ୍ତିଯୋଗ ।
ଦିନ ସରିଆସେ, ସରୁନି ପଥ
ଚରଣ ତଳରେ ମରଣ-ବାଲି,
ତମପାଇଁ ଲେଖେ ଉପୋଦ୍‌ଘାତ
ମୋ ପଛରେ ଯିଏ ଆସିବ କାଲି ।
ଅଗ୍ରପଥିକ ନଥିବି ସେବେ
ଥିବ ମୋ ଚରଣଚିହ୍ନ ଛବି,
ଅଳଂକୃତ ମୁଁ ସତ୍ୟ-ଶିବେ—
କରି, ରଖିନାହିଁ କିଛି ବି କବି ।
ଝଡ଼ର ବେହେଲା, ଅଗ୍ନିବୀଣା
ବଜାଇ ଯାଇଛି ବାଦ୍ୟକାର,
ପରିଶୋଧ କରି ପାରିନି ଦେଣା—
ଅତ୍ୟାଚାରର, ସରିଛି ବେଳ ।
ତମେ ତା ଶୁଝିବ ଆଗନ୍ତୁକ
ରଖିବନି ମୋତେ ଜମା ତ ଋଣୀ,
ଜୀବନ ପାଇଁ ମୁଁ ଅଗ୍ନିମୁଖ
ଉଚ୍ଚାରିଛି ତ ବଜ୍ରବାଣୀ ।

ମୋର ଯେ ଲଢାଇ ମୋ ଅଭିଯାନ
ତାର ବିପ୍ଳବୀ-ମୂଲ୍ୟବୋଧ,
ଅବିନାଶୀ ସେତ ବହ୍ନିମାନ
ମହାଜନତାର ଯୁକ୍ତିବେଦ ।
ଏଠି ଥମିଗଲେ, ଶୁଭିବ ସେଠି
ଦୁର୍ଯ୍ୟୋଧନର ଯେ ଯାଏଁ ଜାନୁ,–
ଭାଙ୍ଗିତ ନାହିଁ, ଆସିନି ଉଠି
ସାମ୍ୟସୂର୍ଯ୍ୟ, ମୁକ୍ତିଭାନୁ;
ହୋଇନି ଧରଣୀ ଅକୌରବା
ବାନ୍ଧିନି ଜୁଡ଼ା ଯାଜ୍ଞସେନୀ,
ନିଃସ୍ୱଜନନୀ ବିଶ୍ୱରୂପା
'ତଳ'କୁ ଉପରେ ଥୋଇନି ଆଣି;
ସଂଗ୍ରାମ ମୋର ଅବ୍ୟାହତ
ଜୟ-ପରାଜୟ ଭିତର ଦେଇ,
ଆସିବ ସଂନ୍ଧ୍ୟା, ରଜନୀ, ପ୍ରାତ
ଜୀବନ-ମରଣ ଦ୍ୱନ୍ଦ୍ୱ ନେଇ ।
ତାହାରି ଭିତରେ ଦ୍ୱନ୍ଦ୍ୱବାଦୀ
ଥିଲି ମୁହିଁ, ଥିବ ମୋହରି ଲେଖା
ଆଜନ୍ମରୁ ମୁଁ ସାମ୍ୟବାଦୀ
ସର୍ବହରାର ଗର୍ବଶିଖା ।
ମରଣଟା ହେଲା ପଦାର୍ଥର
କେବଳ ନିପଟ ରୂପାନ୍ତର
ସେଥିପାଇଁ ନାହିଁ ଦୁଃଖ ମୋର
ଯିବି, ଆସୁଥିବି ବାରମ୍ବାର ।
ହେ ମହାଜନତା ସଲାମ୍ ନିଅ
ଗୋଲାମ ନହୋଇ, ହୁଅରେ ପ୍ରଭୁ
ସାରା ଦୁନିଆକୁ ଦଖଲେ ନିଅ
ଅସମାନତାର ଭିତ୍ତି ଦବୁ ।



ର.କା.
୪ ସେପ୍ଟେମ୍ବର, ୯୫
ରାତି ୧୦ଟା

# ବର୍ଷେ ପୂରିଲା...

ବର୍ଷେ ପୂରିଲା, ବର୍ଷେ ପୂରିଲା ତମ ମୃତ୍ୟୁର ଆଜି
ଶୂନ୍ୟମନ ଓ ଶୂନ୍ୟ ହୃଦୟ ଯାତନାରେ ଭିଜି ଭିଜି,
ଅବାଂଛନୀୟ ଭୀମ ଗୁରୁଭାର –
ବହି ମୁଁ ଛାଲିଛି, ଚାବୁକ୍ ପ୍ରହାର
ନାହିଁ ତ ନିଦ୍ରା, ନାହିଁ ତ ଆହାର
ତେବେ ବି ପାରୁନି ହଜି,
ବର୍ଷେ ପୂରିଲା ତମ ମୃତ୍ୟୁର ବର୍ଷେ ପୂରିଲା ଆଜି ।

ଯେ ବିଷବୃକ୍ଷ ରୋପି ଯାଇଥିଲ ସେଥିରେ ଧରିଛି ଫଳ,
ଶାଖାପ୍ରଶାଖାରୁ ଝରୁଛି ଗରଳ, ଥରୁଛି ହୃଦୟ ତଳ ।
ଛଅଟା ଆଖିର ରକ୍ତ ଚାହାଣି
ତିନିଟା ମୁହଁର ଅଶ୍ଳୀଳ ବାଣୀ
ଛଅଟା ହାତର ନିତି ରାହାଜାନୀ
ଝୁଣେ ଘେରି ତିଳ ତିଳ,
ତମ ହାତଲଗା ବିଷବୃକ୍ଷରେ ଧରିଛି ସଜନୀ ଫଳ !

ମୋର ଆଦର୍ଶ, ମୂଲ୍ୟବୋଧକୁ ଏ ଗଛର ଶଇତାନ,
ସପାତ୍ ସପାତ୍ ମାରୁଛି ଚାବୁକ୍ ନର୍ବୋଧ ବେଇମାନ ।
କଂଠନଳିରେ ଦନ୍ତ ଆଘାତ
ରୁଦ୍ଧ କରିଛି ପଳାୟନ ପଥ
ଅସ୍ତ-ଶଇଳେ ଦିନ ରତ ରତ
ତଥାପି ରହିଛି ପ୍ରାଣ,
ମୋହରି ରକ୍ତ, ମୋହରି ବୀର୍ଯ୍ୟ, ନେବାକୁ ବସିଛି ପ୍ରାଣ !

ତିଳ ତିଳ ହୋଇ ତମେ ସରିଗଲ ଏ ବିଷବୃକ୍ଷ ତଳେ,
ତମେ ସରିଥିଲ ଯେଉଁଠାରେ, ସେଠି ମୋର ଚିତାଗ୍ନିଜଳେ ।
ଠିଆ ହୋଇ କବି ଦେଖେ ତାର ଶିଖା
ନୀରବ-ଦହନେ ହୋଇ ଏକା ଏକା
କୀରତିକ୍ରାନ୍ତି ଏ ମୋର ପତାକା –
ବିଦଳିତ ଆଜି ପିଶାଚର ପାଦତଳେ,
ବର୍ଷେ ପୁରିଲା ତମ ମୃତ୍ୟୁର ଏ ବିଷବୃକ୍ଷ ତଳେ ।

ତମେ ତ ମରିନ, ବଞ୍ଚିଯାଇଛ, ମୁକ୍ତି ପାଇଛି ସତ୍ତା,
ମରି ମୁଁ ପାରୁନି, ବଞ୍ଚିପାରୁନି, ଜଳୁଛି ମୋ ନିରାପତ୍ତା ।
ମାନସମ୍ମାନ ଯାଉଛି ପ୍ରତିଭା
ବାହାର ଦୁନିଆ ଜାଣିବ କାହୁଁ ବା !
ଅବସର ନାହିଁ ତମକୁ ସ୍ମରିବା
ନିଃଶେଷ ବିଦ୍‌ବତ୍ତା,
ମୃତ୍ୟୁ ତମକୁ ଦେଇଛି ମୁକ୍ତି, ଶାନ୍ତି ପାଇଛି ସତ୍ତା ।

ହେ ମୋର ପ୍ରେୟସୀ, ମନ-ମନ୍ଦିରେ ଆଉ ଦିଅନାହିଁ ଦେଖା,
ବିସ୍ମୃତ ହୁଅ ଚିରକାଳ ଲାଗି, ରହିବାକୁ ଦିଅ ଏକା ।
ନଷ୍ଟ ହେଉ ମୋ ସବୁ ସ୍ମୃତିକୋଷ
ଅନୁଭୂତି ମୋର ହେଉ ନିଃଶେଷ
ଗ୍ରାସକରୁ ମୋତେ ଜଡ଼ତାର ଦେଶ
ସେ ଦେଶେ କର ଗୋ ଦେଖା,
ଏ ମୋ ଆବାହନ ତମରି ଶ୍ରାଦ୍ଧେ ହେ ମୋ 'ବକୁଳ'ର ଶାଖା ।



"ନିଃନି"
୭ ନଭେମ୍ବର, ୮୯
ରାତି ୧୦ଟା

# ମୋହଭଙ୍ଗ

ମୁଁ ଫେରି ଯାଉଛି
ମୋର ସେହି
ନିଃସଙ୍ଗ, ଜ୍ୱଳନ୍ତ କକ୍ଷ ଆଡ଼କୁ ।
ଏକାକୀତ୍ୱ
ତାର ଦୁଃସହ-ଶୂନ୍ୟତାର
ଧୂସର-ହାହାକାର,
ତାର ବିଷାକ୍ତ ଦଂଶନରେ
ମୁଁ ଜର୍ଜ୍ଜରିତ
ଜୀବନ ମୋମ୍ ।

ମୁଁ ଶିଶୁପରି ସରଳ
କିନ୍ତୁ ବୋକା ନୁହେଁ ।
ଜୀବନ ତମାମ୍ ମୁଁ ପିଇ ଆସିଛି
ପ୍ରତାରଣା, ବଞ୍ଚନା, ଶଠତାର
ଉତ୍କଟ ଗରଳ ।
ସେହି ଗରଳର ଜ୍ୱାଳା,
ସେହି ଜ୍ୱାଳାର ମାଳା
ମୋର ସତ୍ତା, ମୋର ଆତ୍ମା
ମୋର ହୃଦୟକୁ
କରିଛି ଦୁନ୍ଦୁଭି
ମୋର ଚତୁର୍ଦ୍ଦିଗରେ
ମୋର ଦୁର୍ଦ୍ଦୈବ,
ମୋର ନିଷ୍ଠୁର-ନିୟତି
ମୋତେ ବିଦ୍ରୁପ କରୁଛି ।

ବିଦ୍ରୁପ କରୁଛି ଆକାଶ ଓ ମାଟି,
ସ୍ଥାବର, ଜଙ୍ଗମ
ଯେତେ ନରାଧମ
ପୁଣି ପଣ୍ୟପ୍ରେମ
ଶରବ୍ୟ କରିଛି ମୋତେ ।

ରୁଦ୍ର-କାପାଳିକର
ରକ୍ତରଞ୍ଜିତ
ଭୟଂକର କୁଠାର ପରି
ମନରେ ଉଠିଛି ପ୍ରଶ୍ନବାଚୀ
ମୁଁ ପୁନଶ୍ଚ ପ୍ରତାରିତ ନୁହେଁ ତ ?

ଗୋଟିଏ ବିଭ୍ରାନ୍ତିରୁ
ଆଉ ଗୋଟିଏ ବିଭ୍ରାନ୍ତିର ଢ଼େଉରେ
ମୁଁ କଚାଡ଼ି ହୋଇ ପଡୁଛି
ଆତ୍ମାର ଆତ୍ମୀୟା ଖୋଜି ।

ଆତ୍ମାର ଆତ୍ମୀୟ କିନ୍ତୁ
କେହି ନାହାନ୍ତି ।
ସେମାନେ ଶତକଡ଼ା ଦୁଇଶହ ଭାଗ "ସତୀ" (?)
ସମସ୍ତେ ସେମାନେ
ମିସ୍-ମରୀଚିକା ।

ଯାହା ନାହିଁ
ତାହା ମିଳେ ନାହିଁ ।
ଜୀବନର ସମନ୍ୱୟ - ବିଧାୟିକା
ହୋଇପାରେ
କ୍ଷଣେମାତ୍ର ନାରୀ,
ତାକୁ ମୁହିଁ ଖୋଜି ପଥଚାରୀ

ଜନାରଣ୍ୟର ଜରାୟୁ ବିଦାରି
ପାଇନାହିଁ ଦେଖା ।
ପାଇଛି କେବଳ
ଅପ୍ରାପ୍ତିର ଦାରୁଣ ବିଭୀଷିକା ।

ଅତର୍କିତ ଦେଖା
ପାଇଛି ପୌରୁଷ ମୋର
ମାଂସ, ମେଦ, ସ୍ତନ, ନିତମ୍ବ,
ଫୋମେଡ୍ ବୋଳା ଚର୍ମ ଓ ବଦନର,
ଚକିତ ଚାହାଣି ଭରା ନୟନର
ଚଳମାନ ଶାଢ଼ିପିନ୍ଧା ଦେହ ।
ସେ ଦେହର ମସ୍ତିଷ୍କ ଆଉ ମନ
ଅତୁଆ ସୂତାର ବଣ୍ଡିଲପରି ଜଟିଳ,
ଖୋଜି ଖିଅ ପାଇବା କାଠିକର ପାଠ ।
ସେ ମସ୍ତିଷ୍କ ଆଉ ମନରେ
ଖାଉଟି - ସଂସ୍କୃତି,
ପଣ୍ୟ-ପ୍ରେମ,
ବନ୍ୟକ୍ଷୁଧା ।
ପ୍ରେମ ନାହିଁ ।

ସେ ମନ ଓ ମସ୍ତିଷ୍କ
କେବଳ ଆତ୍ମକେନ୍ଦ୍ରୀ - ଘଣା ।
ସୁବିଧା ସୁଯୋଗର ଅଭାବ
ସେମାନଙ୍କ ''ସତୀତ୍ୱ''ର ସାଇନ୍‌ବୋର୍ଡ଼ ।
ସେମାନଙ୍କର ସେ ଅବସ୍ଥାକୁ
ଅଧିକ ଭୟାବହ କରିଛି
'ପରିବାର ନିୟୋଜନ' ଅସ୍ତ୍ରୋପଚାର,
ନାଲି ତ୍ରିକୋଣୀ ଯୋଜନା ।

ମୋର ମଦନ-ମନୋହର
ଅନ୍ତର୍ମଣିଷ
ଯୌବନରୁ ଏଯାବତ୍
ହୋଇ ଆସିଛି ଲହୁ-ଲୁହାଣ
ହୋଇଛି ଘାଏଲ
ମୋର ବୈପ୍ଳବିକ ସତ୍ତା
ବାରବାର......
ଲଗାତର ।
ହୋଇ ମୋହଗ୍ରସ୍ତ
ତଥାପି ପ୍ରେମପାଇଁ
ମୁଁ ଯୁଦ୍ଧରତ ।

ସେ ପ୍ରେମ
ପଣ୍ୟପ୍ରେମ ନୁହେଁ ।
ବନ୍ୟ କ୍ଷୁଧା ନୁହେଁ ।
ସେ ପ୍ରେମ ଶୁଦ୍ଧ, ନିର୍ଭେଜାଲ୍,
ସେ ପ୍ରେମ ବିଶ୍ୱପ୍ରେମ, ମାନବ ପ୍ରେମ ।
କେତେ ଦେଲି, କେତେ ପାଇଲିର
ହିସାବ-ନିକାଶ
ଯେଉଁ ସମାଜରେ
ଶାଶ୍ୱତ ପ୍ରେମର କରିଛି ସର୍ବନାଶ
ସେ ସମାଜକୁ ବଦଳାଇବାର ପ୍ରେମ.......
ସେଥିପାଇଁ ମୋର
ଅବ୍ୟାହତ ସଂଗ୍ରାମ୍ ।

ମୁଁ ନିର୍ବୋଧ, ବୋକା
ପୁଣି ଓଲୁ –
ହୋଇ ନଥିଲେ
ବାରମ୍ବାର ଧରୁ ନ ଥାନ୍ତି
ପ୍ରେମର ଶାଢ଼ିପିନ୍ଧା ଭାଲୁ ।

ବେରସିକ ପରି
ଶତସହସ୍ର ବାର
ଫେରି ନଥାନ୍ତି
ପ୍ରେମର ସିଂହଦ୍ୱାରରୁ
ହୋଇ ପତାରିତ ।

ମୋ ଆତ୍ମାରେ
ଆଜି ପୁଣି ଅସହ୍ୟ ଜ୍ୱଳନ
ପୁଣିଥରେ ଭାଙ୍ଗିପଡ଼େ ସ୍ୱପ୍ନର ଖ୍ଲାଣ ।
ଟାଟିଉଠେ ଶିରା - ଉପଶିରା,
ପୁଣିଥରେ ଉଡ଼ିଯାଏ
ହର୍‌ରଙ୍ଗୀ ପାରା

ପୁଣିଥରେ ମୋହଭଙ୍ଗ ମୋର
ପୁନଶ୍ଚ ଘଟୁଛି ଆଉ
ଫେରୁଛି ମୁଁ କବି
ମୋ ନିଃସଙ୍ଗ, ଜ୍ୱଳନ୍ତ କକ୍ଷକୁ ।



ର.କା.
୩୧ ଜାନୁୟାରୀ, ୯୭
ରାତି ୮ଟା

# ଦେବବାଣୀ

ନିର୍ଜନ ଦିପହର,
ଯେଉଁ ଦେବତାର ପୂଜା ଜାଣ ନାହିଁ
ତାହାରି ଦେଉଳ ଦ୍ୱାର –
ଖୋଲିଲ କାହିଁ କି ? କିଏ ଡାକିଥିଲା ?
ଅଯାଚିତ ଭାବେ ଆସି,
ପୂଜ୍ୟର ପୂଜା ନକରି ଫେରିଲ
ମିଥ୍ୟାମନ୍ତ୍ର ଘୋଷି ।
କିଲାଭ ପାଇଲ ? କଲ ମହାପାପ
ଅର୍ଜିଲ ଅଭିଶାପ,
ସେଥିରୁ ତମର ନିସ୍ତାର ନାହିଁ
ସେ ତମ ଅନ୍ଧକୂପ ।
ତା ଭିତରେ ପଡ଼ି ଜୀବନ ତମାମ
ଭୋଗିବ ତ ଯନ୍ତ୍ରଣା
ମିଳିବ ତ ନାହିଁ ଆନ୍ତରିକତା
ମିଳିବତ ପ୍ରତାରଣା ।
ସର୍ବନିମ୍ନ ଶାନ୍ତି ତମର
ଜୀବନୁ ମିଳାଇ ଯିବ,
ସ୍ୱର୍ଗ ତ ଦୂରେ, ନରକ ବି ଡାକି
ଦେବନି ତମକୁ ଠାବ ।
ଦିବସ-ରଜନୀ ଭୀତି, ଆତଙ୍କ
ଜଳିବ ତ ଦିକି ଦିକି,
ସର୍ବନାଶିନୀ, ଛିନ୍ନମସ୍ତା
କେହିତ ନଥିଲା ଡାକି ।

ଅଗ୍ନିମନ୍ତ୍ର ନଜାଣି, ଅଗ୍ନି
ସାଥିରେ ଖେଳିଲ ଖେଳ
ସେହି ସେ ଅଗ୍ନି ପାଲଟିବ ତମ
ଜୀବନରେ ଦାବାନଳ।
ଦେବତା ତ ଥିଲା ତାର ମନ୍ଦିରେ
ବସିଥିଲା ଏକା ଏକା
ଜୀବନରେ ତାର ଭରି ଦେଲ କିଆଁ
ହତାଶାର ବିଭୀଷିକା ?
ଆଜି ତା ଦେଉଳୁ ନୀରବେ ଉଠୁଛି
ଦୀର୍ଘଶ୍ୱାସର ଝଡ଼
ବହେ ଅଣଚାଶ, ମହା ହା-ହୁତାଶ
ନମାନି ବନ୍ଧ ବାଡ଼।
ବ୍ୟଥିତ ପ୍ରାଣର ଅଭିଶାପ ନିଆଁ
ତିଳ ତିଳ ଜାଳୁଥିବ
ଜୀବନ - ମରଣ ମଧ୍ୟ ଭାଗରେ
ଦଗ୍ଧ ତ ହେଉଥିବ।
ସେହି ସେ ଦହନ ଜ୍ୱାଳା,
ପରଜନ୍ମରେ ଗୋଡ଼ାଇ ଧରିବ
ପାପିନୀ ତମରି ଗଳା।

ଭଲଗତି ଥିଲେ ଅନୁତାପ କର, ଅନୁତାପ ଭଗବାନ,
ବିନା କାରଣରେ ଯାହାକୁ କରିଛ ତମେ ଗୋ ଅସମ୍ମାନ,
ଅପମାନିତ ସେ ଦେବ ମନ୍ଦିରେ ଲୁହର ଆରତୀ ଦେଇ,
ଆପଣା ପାପର ପ୍ରାଶ୍ଚିତ କର, ନହେଲେ ରକ୍ଷା ନାହିଁ।
ନହେଲେ ସମୟ କରିବ ତମକୁ ପତିତା ତ ମହାପାପୀ
ସାରା ଜୀବନଟା ବିତିବ ତମର ଏକାକୀତ୍ୱକୁ ଚାପି।
ହୃଦୟଟା ହେବ ତପ୍ତ ସାହାରା ଅଧିକୁଁ ଅଧିକ ଶୂନ୍ୟ
ପ୍ରତି ପଦପାତେ ତମକୁ ଭେଟିବେ ଶଠ, ଲମ୍ପଟ, ବନ୍ୟ।

ପ୍ରେମ ତ ମିଳିବ ନାହିଁ
ପ୍ରତାରଣା ଆଉ ଛଳନା କେବଳ ଗଚ୍ଛିତ ତମପାଇଁ –
ଟେକିଲାଣି ଦେଖ ଫଣା,
ଘରେ ଓ ବାହାରେ, ତମ ଚାରିଧାରେ
ନରକର ଯନ୍ତ୍ରଣା ।

ବିନା କାରଣରେ ଯେଉଁ ଦେବତାକୁ ମାରିଛ ତମେ ତ ଛୁରୀ
ସେହି ସେ ରକ୍ତ ତମ ଜୀବନରେ କାଳକୂଟ ବିଷପରି ।
ଘେନ ଅଭିଶାପ ସବୁଥାଇ ତମ ନ ଥାଉ ବି କିଛି, ଦୀନା !
ଯେଉଁ ଶଇତାନ ପାଇଁ ତମେ କଲ ଦେବତାକୁ ପ୍ରତାରଣା ।
ତାଙ୍କରି ଠାରୁ ହୁଅ ପ୍ରତାରିତ, ଚିରକାଳ ବନ୍ଦିନୀ
ମନେରଖ, ତମ ଆଜିର ରଙ୍ଗ ସବୁଦିନେ ରହିବନି ।



ର.କା.
୧ ମାର୍ଚ୍ଚ ୧୯୯୭
ରାତି ୨ଟା

# ରସ ନୁହେଁ ଝରେ ରକ୍ତ

ଅନ୍ତରକୁ ମୋ ଚୁପୁଡି ଚୁପୁଡି ରସ ନୁହେଁ, ଝରେ ରକ୍ତ,
ମନ-ମନ୍ଦିରେ ତମକୁ ମାନସି ! ପୂଜିପୂଜି ମୁହିଁ ଭକ୍ତ ।
ନମିଳିଲା ମୋଟେ ତମ ଦରଶନ
କ୍ଳାନ୍ତ ଆଜି ମୋ ତନୁ-ମନ-ପ୍ରାଣ
ପ୍ରେମ-ଅଂବୁଧି ମଂଥିଲେ ମିଳେ ଅନୁଭୂତି ଏତେ ତିକ୍ତ !

ଯଉବନ-ବନ-ବିହାର ଛାଡ଼ି ମୁଁ ଫୁଲଧନୁ ଥିଲି ଫିଙ୍ଗି,
ସୈନିକ କଡ଼ା ପୋଷାକ ଅଙ୍ଗେ, କିଶୋର ବୟସୁ ଜଂଗୀ ।
ପୋଡ଼ା-ବାରୁଦର ଢ଼େଘ ତଳେ ତଳେ
ଅମଙ୍ଗଳର ବିରୋଧୀ - ସମରେ —
ଲିପ୍ତ ରହିଗୋ ଭୁଲିଥିଲି ପ୍ରେମ-ପ୍ରଣୟକୁ କୋମଳାଙ୍ଗି !

ଜୀବନ-ମରଣ ଯହିଁ ହାତାହାତି, ଲଢ଼ାଇ ରକ୍ତଝରା,
ମରଣ-ବିରୋଧୀ-ରଣ-ଉତ୍ସବେ ଥରେ ଯେବେ ସସାଗରା;
ସେଠି ମୁଁ ପଛକୁ ଅନାଇନି ଦିନେ
କେତେ ଫୁଲ ଫୁଟେ ଯଉବନ-ବନେ
ମୋ ପାଇଁ କାହାର ବ୍ୟଥା ଜାଗେ ମନେ ରସ-ଶୃଙ୍ଗାର ଝରା ।

ଶାଶ୍ୱତ ପ୍ରେମ, ପ୍ରୀତି, ଯୌବନ, ଫୁଲ ପାଇଁ ଲଢ଼ି ଲଢ଼ି,
କ୍ଳାନ୍ତ-ସେନାନୀ ଏକାକୀ ଯେବେଳେ ଶିବିରେ ରହିଛି ପଡ଼ି,
ଜାଗିଛି ଯେବେଳେ କ୍ଷତ ପରେ କ୍ଷତ
ଘେରି ଅଛି ମୋତେ ଜ୍ୱାଳାର ଜଗତ
ସେହି ଜଗତକୁ ଋତୁରାଜ ଜେମା କେଉଁଠୁ ଆସିଲ ଉଡ଼ି ?

ଛୁଅଁନା ଛୁଅଁନା, କରିଥିଲି ମନା, ଆହତ ଏ ପଦାତିକେ
କିଏ ଜାଣେ କେବେ ଉଠିବ ତୋଫାନ୍ ମୋ ଜୀବନ ପଥ ବାଁକେ !
ସେ ତୋଫାନେ ଏକା ମାରିବି ଆହୁଲା
ଶ୍ରେଣୀ-ସଂଗ୍ରାମେ ହୋଇବି ଘାଉଲା
ଶହୀଦର ମହା ଲାଲ-ଗୌରବ ହାତଠାରି ମୋତେ ଡାକେ ।

ଏ ମୋର ପ୍ରତିଭା ନୀରବେ କଷ୍ଟ ପାଇଛି ଜୀବନ-ସାରା
ଉପଯୁକ୍ତ କେ ପ୍ରାଣସଙ୍ଗିନୀ ଦେଇନାହିଁ ଆସି ଧରା ।
ଅପୂର୍ଣ୍ଣ ମୋର ଗୋପନ-ଅଭାବ –
ତମେ କି ପୂରଣ କରି ତା ପାରିବ ?
ତା ହେଲେ ଫୁଟିବି ତମରି ଗଭାରେ ପାରିଜାତ ଫୁଲ, ତାରା ।

ବଦନ-ବ୍ୟୋମରୁ ଝର ଝର ଝର ଝରାଇ ଗୋ ସ୍ୱେଦ ବିନ୍ଦୁ,
ଲଳିତ-ଅଙ୍ଗୀକାରେ ମୋ ବେଳାରେ ସାଗରିକା ତମେ ସିନ୍ଧୁ ।
ଲୋଟିଥିଲ ସେବେ ପାଦତଳେ ମୋର
ସାଥୀ ହେବ ବୋଲି ଚିର ଜନମର
ଖସି ପଡ଼ିଥିଲା ନୀବୀବନ୍ଧନ ତମରି ସେ କଟିବନ୍ଧୁ ।

ସବୁ ମନେ ଅଛି, ଭୁଲି ନାହିଁ କିଛି, କ୍ଲାନ୍ତ-ଶିବିରେ ମୋର,
ତମ ରୂପଛବି ଆଗୋ ନାରୀକବୀ, ସିଞ୍ଜିନୀ ନୂପୁରର,
ଆଜି ବି ବାଜଇ କାନେ ରୁଣୁ ଝୁଣୁ
ତମେ ତ ଆସିନ କାହିଁ ମୋତେ ଦିନୁ
ବହୁତ ତ ଡେରିରେ ଯେଉଁ ରୋମାଞ୍ଚ-ଚାରା ରୋପି ଯାଇଥିଲ;

ସବୁ ତ ଝାଉଁଳି ପଡ଼ିଲାଣି ସିନା ଆସି ଦେଖ ପ୍ରିୟତମା !
ହୁଏ ନାହିଁ ପ୍ରତେ, ଭେଟିଲିକି ପଥେ ଧନବାଦୀ - ପ୍ରତାରଣା ?
ଆଦର୍ଶବାଦୀ ମହାଶତ୍ରୁର
ତମ ରୂପ ଧରି ଆସିଥିଲା ଚର
କରିବାକୁ ମୋତେ ଲକ୍ଷ୍ୟପଥରୁ ବିଚ୍ୟୁତ, ବାଟବଣା ?

ଦିନର ଅନ୍ତେ ଆସିଲେ ସନ୍ଧ୍ୟା ଏଇ ସନ୍ଦେହ - ଦୋଳା,
ମନର ଗଭୀରେ ସୃଷ୍ଟିକରଇ ଗ୍ଲାନିକର-ହିଂଦୋଳା ।
ଅନୁମାନ ମୋର ଯେବେ ନୁହେଁ ସତ,
ହୋଇବା ଆଗରୁ ଦିନ ରତ ରତ
ଗାଇ ସୁଦୂରିକା ଗୁଣୁ ଗୁଣୁ ଗୀତ ଆସିଦେବ ମୋତେ ଧରା ।



"କନିକା କଟେଜ"
ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ
୧ ଜୁନ୍, ୧୯୮୨ ସକାଳ

# ଭବିଷ୍ୟତର ଆଶାରେ...

ଯେଉଁମାନେ ତମର ଶତ୍ରୁ ନୁହନ୍ତି
ତମରି ବଂଶୋଦ୍ଭବ
ସେମାନଙ୍କୁ ମାରିବା ପାଇଁ
ଭଡ଼ାରେ ଆସିଥିଲ ତମେ ।
କିନ୍ତୁ କାହାନ୍ତି ସେମାନେ ?
ସେମାନେ ନାହାନ୍ତି ଏଠି,
ଗଭୀର ଜନାରଣ୍ୟରେ ହୋଇ ଯାଇଛନ୍ତି ଏକାକାର ।
ସମର-ସମ୍ଭାର, ବଳଦର୍ପ, ସଂଖ୍ୟାଧିକ୍ୟ;
ଦିମାକ୍ ଆଉ ଦାଦାଗିରିରେ
ଦେଶପ୍ରେମ, ବିପ୍ଳବୀ-ଅଙ୍ଗୀକାର,
ଆତ୍ମବଳିଦାନର ରାଜନୀତି
ମରେ ନାହିଁ ।
ଏହା ଏକ ବଳଦିଆ ଅଙ୍କ,
ଭୁଲ୍ ହିସାବ ।

ନିଜର ଆତ୍ମସମ୍ମାନ, ସ୍ଥିତି ଆଉ ଅଧିକାର ପାଇଁ
ଜୀବନ ଓ ରକ୍ତର ବିନିମୟରେ
ମଣିଷ ଲଢୁଛି ଏଠି,
ଲଢିଆସିଛି ସୁଦୂର ଅତୀତରୁ
ଆସମୁଦ୍ର ପୃଥିବୀର କୋଣେ କୋଣେ,
ଜଳେ, ସ୍ଥଳେ, ଅନ୍ତରୀକ୍ଷେ
ଜନଯୁଦ୍ଧର ଦ୍ୱନ୍ଦ୍ୱାତ୍ମକ ଗତି
ବେଳୁବେଳ ବର୍ଦ୍ଧମାନ ଆଉ ବଳଶାଳୀ ।

ଇତିହାସର ଘୂର୍ଣ୍ଣିଝଞ୍ଜା,
ମାନବିକତାର ଆଦିମ ଆଉ ହିଂସ୍ର-ପନ୍ଝା,
ନିପୀଡ଼ିତର ବିଦ୍ୱେଷର ବହ୍ନି

ଚିର ଅନିର୍ବାଣ
ଅଜର ଆଉ ଅମର ।
ସାମରିକ ସୀପାହୀର ଧୂସର-ଅଟ୍ଟହାସରେ
ତାର ବିନାଶ ଅସମ୍ଭବ.....ଅସମ୍ଭବ ।

ଯେଉଁଠି ମୃତ୍ୟୁ ଜୀବନର ଗରିମାରେ ବିଭୂଷିତ,
ଯେଉଁଠି ଚିତାର ଲେଲିହାନ ଶିଖା ହୁଏ
ପ୍ରାଣମୟ ଅଗ୍ନି,
ଗଳିତ-ଶବାଗାର ଠେଲି ଯେଉଁଠି ମୁଣ୍ଡ ଉଠାଏ
ଶହୀଦ୍‌ର ବଂଶଧର;
ମାତାର ଧର୍ଷିତ-ଯୋନି,
ଭଗିନୀର ଲୁଣ୍ଠିତ ଯୌବନ ଭିତରୁ
ଯେଉଁଠି ଜନ୍ମନିଏ ରକ୍ତଚାମୁଣ୍ଡା-ଚଣ୍ଡୀ;
ସେଠି ଜୟ-ପରାଜୟ, ପୁନର୍ବାର ଜୟ,
ପୁନର୍ବାର ପରାଜୟ ଭିତରେ
ଚୁଡ଼ାନ୍ତ ବିଜୟ ଅବଧାରିତ ।

ତମ ଓଜନିଆ ସାମରିକ ବୁଟ୍‌ର ଗୋଇଠି ତଳେ
ରଜନୀର ଗଭୀର ଅନ୍ଧକାର
ଆଉ ତାର ନିଷିଦ୍ଧ ପ୍ରହରରେ
ଜନ୍ମ ନେବ ଆଜି ଯେଉଁ ଶିଶୁ,
ତାର ଜନନୀ ହୋଇଛି ଧର୍ଷିତା ।
ତାର ଭଗିନୀ ହୋଇଛି ଅପହୃତା ।
ଗୁଳିବିଦ୍ଧ ହୋଇଛି ତାର ପିତା ।
ତାର ବଢ଼ିଉଠିବାର ପରିବେଶ ଉପରେ
ତମେ ଅଜାଡ଼ି ଦେଇଛ ଭଙ୍ଗାଇଟାର ପାହାଡ ।
ଆଜି ଜିନ୍ମ ନେବ ଯେଉଁ ଶିଶୁ
ସେ ଯଦି ବଞ୍ଚି ରୁହେ,
ସେ ଯଦି ବଡ ହୁଏ,
ଇତିହାସ ଯୋଗାଇବ ତାକୁ ସବୁ ତଥ୍ୟ,
ସବୁ ସତ୍ୟ ମହାବେଦନାରେ
ହୋଇ ଥରଥର ।

କୁଳବୃଦ୍ଧ ସିଏ
ଇତିହାସ ଆ-ସମୁଦ୍ର ପୃଥିବୀର ।
ଯେଉଁ ଶିଶୁ ଆଜି ଜନ୍ମ ନେବ,
ଦୂର୍‌ଦୈବର କୋଳୁଁ
ଯାହାର ଶୁଣାଯିବ ସୁତୀବ୍ର ଚିତ୍କାର,
ମୁଁ ଏଠି ଦଣ୍ଡାୟମାନ
ତା'ରି ପ୍ରତୀକ୍ଷାରେ ।

ଜନ୍ମମାତ୍ରେ ମୁଁ ତାହାକୁ ଟେକି ନେବି କୋଳେ,
କାରଣ, ମୁଁ ପିତା,
ମୁଁ ମାନବତା ।
ଆଗାମୀର ସୂର୍ଯ୍ୟୋଦୟ,
ତାର ଲୋହିତ-ସମ୍ଭାବନାର ସୁରକ୍ଷା ପାଇଁ
ନିଯୁକ୍ତ ମୋର ପିତୃତ୍ୱ
ମୋର ବିବେକ ।
ତାର ବିନାଶ, ତାର ଅବଲୁପ୍ତି ପଥରେ
ମୁଁ ଏକ ଅଲଘଂନୀୟ
ବାଧାର ବ୍ୟାରିକେଡ୍ ।

ତମର ସମସ୍ତ ସମର-ସମ୍ଭାର,
ଷ୍ଟେନ୍, ବ୍ରେନ୍, ଆର୍ଟିଲାରି, ଟ୍ୟାଙ୍କ୍ ଓ ବିମାନ,
ଗୁଳିଗୋଳା, ତମ୍ବୁ ଓ ପୋଷାକ
ସବୁକୁ ଗୋଟାଏ ପୁଟୁଳା କରି
ଏଇ ମୁଁ ଫିଙ୍ଗିଦେଲି
ଭାରତ ମହାସାଗରର ଅତଳ ଗଭୀରତାକୁ ।

କାରଣ, ଯେଉଁ ଶିଶୁ ଆଜି ଜନ୍ମନେବ
ତା'ରି ସୁରକ୍ଷା, ତା'ରି ସୁଖୀ ସୁନ୍ଦର
ସୁନେଲି ଭବିଷ୍ୟତର ଆଶାରେ ।



ର.କା.
୭ ଜୁନ୍, ୧୯୮୮

# ଅବିନାଶ

ଆତ୍ମାରୁ ମୋର ଝରୁଛି ରୁଧିର ଆତ୍ମୀୟ ଛୁରାଘାତେ,
ମରଣର ସୁର୍ ମିଶୁଛି ନୀରବେ ଆସି ପ୍ରାଣସଂଗୀତେ,
ଆଗରେ-ପଛରେ ଶୂନ୍ୟ-ସାହାରା
ତା ଭିତରେ ମୋର ଜୀବନ ଧାରା
ହେବ ବହମାନ ଆଉ କେତେଦିନ ? କେତେ ଦିନ ଆଉ ସତେ !

ମୋର ପ୍ରତିଭାର ଦାୟାଦ ଜଣେ ଏକ ଏଯାଏଁ ଦେଲେନି ଦେଖା,
ଯାହା ମୋ ସୃଷ୍ଟି, କଳା ଓ କୃଷ୍ଟି, କୀରତି-କ୍ରାନ୍ତି ଶିଖା –
ଜନାରଣ୍ୟର ଅତଳ ଗଭୀରେ
ଦିବସ-ରଜନୀ ଜଳେ ତାହା ଜଳେ
ନିବାସରୁ ମୋର ସେ ଶିଖା ନିଭିଛି, ରାତ୍ରିର ବିଭୀଷିକା ।

ସେହି ରାତି ଅତି ଚିକିଟା, ବହଳ, ନିଷ୍ଠୁର, ନିର୍ଦ୍ଦୟ,
ଅସହ୍ୟ ଆଉ ଅସଭ୍ୟ, କଳା, ତାକୁ ମୋର ପ୍ରାଣେ ଭୟ ।
ସେ ରାତିକୁ ପୁଣି ପାଳେ ମୁହିଁ ପୋଷେ
କେବେ ଅଧାପେଟେ, କେବେ ଉପବାସେ
ନିଦ ତ ଆସେନା ଆଖି-ପଲ୍ଲବେ, ଘଟିଲେ ସୂର୍ଯ୍ୟୋଦୟ –

ମୁକ୍ତ-ଆକାଶ ତଳେ ଯେତେବେଳେ ସୁରୁ ହୁଏ ମୋର ଗତି,
ଜନସ୍ରୋତରେ ନିଜକୁ ଭସାଏ, ସବୁ କ୍ଷତ, ସବୁ ଭୀତି,
ମନର ଅତଳେ ଦୁଃଖ ଗଭୀର
ନିମିଷକେ ସବୁ ହୋଇଯାଏ ଦୂର
ସତ୍ତା ମୋ ହୋଇଉଠେ ବିଦ୍ରୋହୀ ଦେଖି ଦୁନିଆର ଗତି ।

ମହାଭୂଗୋଳର ମାନଚିତ୍ରକୁ ଟେକି ମୋ ଜିରାଫ୍-ଗ୍ରୀବା,
ଦେଖେଁ ବିକ୍ଷୋଭେ ପଦାତିକ କବି ଶୋଷକର କୁରୁସଭା,
ଦେଖେ ଦାସତ୍ୱ-ଚକଟା ଘୂରୁଛି
ମାନବିକତାକୁ ପଙ୍ଗୁ କରୁଛି
ସଉଁଦର୍ଯ୍ୟଟା ହେଉଛି ବିକଳ, ବିକୃତ ତାର ଆଭା ।

ବେଳଗଡ଼ିଲାଣି, ହୋଇନି ଭୋଜନ, ସେକଥା ନଥାଏ ମନେ,
କ୍ଷୁଧା ମୋ ସ୍ତବ୍‌ଧ, ସତ୍ୟ-ଶିବର ଅଧୋଗତି ଦରଶନେ ।
କଲମ ଭିତରେ କାଳିଟା ଚହଲେ
ଅଛିକିନା ନାହିଁ ମାଟି ପାଦତଳେ
ଜାଣି ମୁଁ ପାରେନା ଚିର ମୁଷାଫିର୍, ସୂର୍ଯ୍ୟଟା ବୁଡ଼େ ଏଣେ ।

ଅସ୍ତ-ଆକାଶ ସୂର୍ଯ୍ୟ-ଶୋଣିତେ ହୁଏ ଯେତେବେଳେ ନାଲି,
ଦିନର ବିଦାୟ, ସନ୍ଧ୍ୟା ଉଦୟ, ସେବେଳେ ଆସେ ମୁଁ ଫେରି –
ଜୀବନ୍ତ ମୋର ନରକ-ନୀଡ଼କୁ
ଅନ୍ଧକାରର ନିବିଡ଼ ଭିଡ଼କୁ
ଆତ୍ମାରୁ ପୁଣି ଝରେ ମୋ ରୁଧିର, ନୀରବରେ ସାପ ପରି –

ନିଃଶ୍ୱାସରୋଧୀ ଆତ୍ମୀକ ସବୁ ଯନ୍ତ୍ରଣା, ଅପମାନ –
ସହ୍ୟକରେ ମୁଁ ଅପସଂସ୍କୃତି, ତାର ବିଷଦଂଶନ ।
ନିୟୂତ ନିୟୂତ ବୃଶ୍ଚିକ ହୁଳ
ବିନ୍ଧ କରେ ମୋ ପ୍ରାଣ, ଅନ୍ତର
ଏଇ ମୋର ନିତିଦିନିଆ ଜୀବନ, ମୁଁ ଏକ ଦୁଃଖୀଜନ ।

ମରଣକୁ କେବେ ଭୟ ମୁଁ କରିନି, ବରଂ କରିଛି ଘୃଣା,
କେତେ ଶତବାର ଛିଡ଼ାଇଛି ହାତେ ମୃତ୍ୟୁର ପରୱାନା ।
ଜୀବନବାଦୀ ମୁଁ ଜୀବନର କବି
ଆଙ୍କିଛି ସଦା ଜୀବନର ଛବି
ମାନବଜାତିକୁ ପ୍ରଣାମ କରିଛି ଧରି ଜୀବନର ବାନା ।

ଅଦ୍‌ଭୁତ ମୁହିଁ, ଅଦ୍‌ଭୂତ ମୋର ଜୀବନର ଉପାଦାନ,
ସେହି ଉପାଦାନେ ବିସ୍ମିତ ହୁଏ ଆଧୁନିକ ବିଜ୍ଞାନ ।
ପାଏ ନାହିଁ କିଛି ତାର ଥଳକୂଳ
ପାଲଟି ଯାଏ ସେ ସ୍ତବ୍‌ଧ, ନିଥର
ବିସ୍ମୟକର ମହାଅବୋଧ ତାପାଖେ ମୁହିଁ, ମୋ ପ୍ରାଣ ।

ସୂର୍ଯ୍ୟଟା ମୋତେ ଜାଳେ ଆଉ ପୋଡ଼େ ଦିଏ ତ ପାଉଁଶ କରି,
ସୂର୍ଯ୍ୟଟା ନିଜେ ଜଳିପୋଡ଼ି ଯାଏ, ପାଉଁଶ ହୁଅଇ ମରି ।
ଡାକିଆଣେ ରାତି ଅନ୍ଧାର ଘନ
ବିସ୍ମୟକର ଏ ମୋର ଜୀବନ
ବିପଜ୍ଜନକ ତାର ଉପାଦାନ, କଲ୍ୟାଣକର ଭାରି ।

ଆସିଥିଲି କବି ରିକ୍ତହାତରେ, ତିକ୍ତତା ନେଇ ଯିବି,
ବିଦାୟ ଆଗରୁ ଶୋଷଣମୁକ୍ତ ଶ୍ୟାମଳ ଗ୍ରହର ଛବି –
ଦେଖିଯିବା ପାଇଁ ଥିଲା ମୋର ଆଶା
ବହୁଡ଼େରି ଅଛି ଅନାଗତ ଉଷା
ସ୍ୱପ୍ନ ବହୁତ, ରାତି ଅତି କମ୍, ଦୀପ ମୋ ଆସୁଛି ନିଭି ।

ଆଜିତ ଏ ମୋର ଚଳମାନଦେହ ଦୁର୍ବଳ ପୁଣି କ୍ଲାନ୍ତ,
ପାଦ ଦୁଇଟି ମୋ ଅବଶ, ବିବଶ, ସିଏ ଭାରୀ ପଥଶ୍ରାନ୍ତ ।
ବାଟ ସରୁନାହିଁ, ସରୁଛି ଜୀବନ,
ଘନାଇଁ ଆସୁଛି ବିଦାୟ ଲଗନ
ଅପରାହ୍ନର ମଳିନ ଗଗନ ଉପରେ ମୋ ଭାର-କ୍ରାନ୍ତ ।

ଗତିକଲାବେଳେ ଖସିପଡ଼େ ମୁହିଁ ଗଳିତ ଉଲକାବତ,
ତାପରେ କିଏସେ କରୁବା ନକରୁ ମୋ ପାଇଁ ଅଶ୍ରୁପାତ,
କିବା ଯାଏ ଆସେ ମୋହର ସେଥିରେ ?
ଆତ୍ମୀୟ କେହି ମୋରତ ନଥିଲେ
ଥିଲେ ଯେଉଁମାନେ, ଜୀବନ ତମାମ କରିଥିଲେ କଷାଘାତ ।

ମୁଁ ସେବେ ନଥିବି, ଭାବମୂର୍ତ୍ତି ମୋ ଦଳିତର ଅନ୍ତରେ –
ଥିବ ବିରାଜିତ, ଅଶ୍ରୁ, ଶୋଣିତ. ବେଦନା-ବାରିଧି ଜଳେ ।
ବେକାର ଯୁବକ, ଭୋକିଲା ଛୁଆର –
ହୃଦୟରେ ମୁହିଁ ଥିବି ଲଗାତର
କ୍ଷୋଭେ, ବିକ୍ଷୋଭେ, ବିପ୍ଳବେ, ପଟୁଆରେ ।

ମୁଁ ଏକ ଚେତନା ଅଜର, ଅମର, ଅଜେୟ, ଅନିର୍ବାଣ,
ମାନବଜାତିର ରଣଉତ୍ସବ, ଚରମ ବିଜୟ ଦିନ ।
ସାମ୍ୟଯୁଗର କ୍ରାନ୍ତି ପତାକା
ଚିର ଶାନ୍ତିର ଜ୍ୱଳମାନ ଶିଖା
ଆଜି ମୁଁ ନିଭିଲେ ହୋଇତ ଉଠିବି କାଲି ଦେଦୀପ୍ୟମାନ ।



ର.କା.
୬ ଫେବୃୟାରୀ, ୯୫
ରାତି ୧୨ଟା

# ତଥାପି ...

କି ନୂଆ କବିତା ଲେଖିବି ଭାଇରେ
ଧର୍ଷିତା ବାଗ୍‌ଦେବୀ,
ଆଖି ଆଗେ ଆଜି ସବୁ ଅବୋଧ
ସବୁ ବିମୂର୍ତ୍ତ ଛବି ।
କିମ୍ଭୂତ ସବୁ ଚେହେରା ଓ ଭାଷା
ଅଦ୍‌ଭୁତ ସବୁ ବେଶ,
ସବୁ ତ ଭେଜାଲ୍, ଅପମିଶ୍ରିତ
ସ୍ତନ, ନିତମ୍ବ, କେଶ ।
କୃତ୍ରିମତାର ଚାହାଣି ଆଖିରେ
ହୃଦୟେ ଯାଂତ୍ରିକତା
ଉଦୟେ, ଅସ୍ତେ କାମନା-ବାସନା
ଦେଶ, ଦୁନିଆର କଥା –
ପାସୋର ଗଲାଣି, ମଣିଷ ବୁଲୁଛି
ଆତ୍ମକେନ୍ଦ୍ରୀ-ଘଣା,
'ଆଧୁନିକ' କବି ଆତ୍ମରତିର
କରେ ବସି ଆରାଧନା –
ସ୍ଥିତାବସ୍ଥାର, ସୁରା ଓ ସାକୀର
ଅଂଗୀକାର ଠୁଁ ଦୂରେ,
ମଦବୋତଲର ସଦର ଘାଟିରେ
ପ୍ଲାଷ୍ଟିକ୍ ଫୁଲେ ଫୁଲେ ।

ନିତି ପଶୁତାର ବସେ ଦରବାର ଦୁର୍ମତି କୁରୁସଭା
ନିତି ଫିଟିପଡ଼େ ଯାଜ୍ଞସେନୀର ସେ କାକକୃଷ୍ଣ ଗଭା ।
ଦୁଃଶାସନର ଶାସନ ଯନ୍ତ୍ର ଗର୍ଜୁଛି ନିରବଧି
ସାରାଭାରତରେ ଛାଇ ତ ଗଲେଣି ଦୁର୍ଯ୍ୟୋଧନର ଜ୍ଞାତି ।
ଯେତେ ମହାମହା ରଥୀ-ମହାରଥୀ, ଜ୍ଞାନୀ, ଗୁଣୀ, ମହାଜନ
ସ୍ଥିତାବସ୍ଥାର ଜୁଆଳିରେ ଯୋଚି ନିଜ ନିଜ ଗର୍ଦ୍ଦନ,
ଲୁଣଖିଆ-ଗୁଣକୀର୍ତ୍ତନକାରୀ ମାନସିକ-ଦାସ ଦଳ
କୁଳଭୁଆସୁଣୀ ବାଜିରଖି ଖେଳି ଜୁଆ ଆଉ ପଶାଖେଳ, –

ଆଜିବି ଚାଲିଛି ତମାମ୍ ଦେଶରେ, କିଛି ତ ବଦଳି ନାହିଁ
ହେଣ୍ଡି ମାରୁଛି ସାରାଭାରତରେ ଆଧୁନିକ କୁରୁସାଇଁ ।
ଆଜିବି ଗନ୍ଧୁଛି ଇନ୍ଦ୍ରପ୍ରସ୍ଥେ ମୁନାଫାର ପଶାକାଠି
ଆବିଷ୍କାର ତ ହୁଏ ନିତିଦିନ ନୂଆ ନୂଆ ପାପଭାଟି ।
ମୂଲ୍ୟବୋଧର ଶବଦାହ ଚାଲେ, ଧାଡ଼ି ଧାଡ଼ି ଜଳେ ଚିତା
ସୁବିଧାବାଦଟା ଆବୃତି କରେ କାଏମୀସ୍ୱାର୍ଥ-ଗୀତା ।

ସାମାଜିକ-ତସ୍କର,
ଭୋଅଟ-ଭେଳାରେ ବସିଥିଲେ ହେବେ ସବୁ ଭବନଦୀ ପାର ।
ଯାଦୁର ମଲମ ବିକୁଥିଲେ ଦିନେ ଯେତେକ ଯାଦୁଆ ପରା,
ନିଜ ଭିତରର ଦ୍ୱନ୍ଦ୍ୱେ ଦ୍ୱନ୍ଦ୍ୱେ ହେଲାବେଳେ ଧରାପରା,
ହସେ ବିଜ୍ଞାନ, ଇତିହାସ ତାର ପକାଏ ଦୀର୍ଘଶ୍ୱାସ
ଭୋଟ୍-ରାଜନୀତି ମୁକ୍ତି ଦିଏନ । କହେ ପୁଣି ଇତିହାସ ।
ଇତିହାସର ଏ ସାବଧାନବାଣୀ ନଶୁଣିବାର ତ ଫଳ,
ଦେଶ, ଜାତି ଆଉ ସମାଜ ଜୀବନ ଟଳମଳ ଟଳମଳ ।
ବିଶ୍ୱକବିର 'ଭାରତତୀର୍ଥ' କଳୁଷିତ ନରନାରୀ,
କଳୁଷିତ କଳା, ସଂସ୍କୃତି, ଦେଶ ବିଶାଳ ମୃତ୍ୟୁପୁରୀ ।
କ୍ଷୋଭେ ଓ ଦୁଃଖେ ଦିନମଣି ଚାଲେ ଅସ୍ତଗଗନ ପଥେ
ବାଜଣା ଶୁଭୁଛି କାଳସଂଧ୍ୟାର ଇତିହାସ ରଥେ ରଥେ –
ବସିଛି ଦାନବ, ସାରଥୀ ତାହାର ଅପସଂସ୍କୃତି ପଶୁ
ଘନାଇଁ ଆସୁଛି ଗାଢ଼ କଳାରାତି ମଣିଷପଣିଆ ଖାସୁ ।

କି ନୂଆ କବିତା ଲେଖିବି ଭାଇରେ
କାବ୍ୟଦେବୀ ତ ଖନୀ,
ଜୀବନପଥରେ ନୀଳମୃତ୍ୟୁର
ଦାଦାଗିରି, ରାହାଜାନୀ ।
ଅରସିକ ଆଉ ବେରସିକ ପାଖେ
କି ରସ ବାଢ଼ିବି କହ !
ଅନ୍ଧଦେଶରେ ଦର୍ପଣ ବିକି
ଜୀବନ ଦୁର୍ବିସହ ।

ଇତିହାସ ଚକ ପଛକୁ ବୁଲୁଛି
ବୁଲାଉଛି ଶଇତାନ,

ଜୀବନ-ଯମୁନା ବହୁଛି ଉଜାଣି
ଦେଖି ମୋ କଲମ ମୂକ –
ସ୍ତବ୍ଧ, ଅବାକ୍, ଜନ-ଚେତନାଟା
ଆଜିତ ବେତନଭୋଗୀ,
ମନନ, ପ୍ରଜ୍ଞା, ବୁଦ୍ଧିବାଦଟା
ତୋଷାମୋଦେ ଅନୁରାଗୀ ।

କାହାକୁ ଡ଼ାକିବି, ଉଠ ବିଦ୍ରୋହୀ, କର ଯାର ପ୍ରତିକାର,
ସବୁତ ସୁପ୍ତ, ସବୁ ନିଦ୍ରିତ ପ୍ରଭାତ-ପକ୍ଷୀର ଦଳ ।
ରୁଦ୍ଧ-ଦୁଆରେ ପଦାଘାତ କରି ଜୀବନ ତମାମ କବି,
କମ୍ ତ ଗାଇନି ପ୍ରଭାତ ଆଗମ ସକାଳର ଭୈରବୀ !
କମ୍ ତ ଲେଖିନି ଧମନୀ ରୁଧିରେ ଜାଗରଣ ପଦାବଳୀ,
ସୁଦୀର୍ଘ ଏକ ଇତିହାସ ତାହା, ହୋଇ ଅଛି ଗତକାଲି ।
'ମଣିଷହିଁ ନିଜେ ନିଜର ମୁକ୍ତିଦାତା,
ମଣିଷହିଁ ମହାକାବ୍ୟର ଗାଥା, ଲେଖି ମଣିଷର କଥା,
ଦେଖିଛି ମୁଁ ତାର ଜୟ-ପରାଜୟ, ଦେଖିଛି ବିଜୟ-ଶିଖା,
ପୂର୍ଣ୍ଣ ମାନବ ମୁକ୍ତି ଯେଦିନ ଧରଣୀରେ ଦେବ ଦେଖା;
ମୁଁ ସେବେ ନଥିବି, ଥିବ ମୋ ଛଂଦ ଉତ୍ତାପ ପଦାବଳୀ,
ସୁଖୀ ସୁନ୍ଦର ସାମ୍ୟସମାଜ ରକ୍ତ ପଦ୍ମଭଳି –
ଫୁଟିଥିବ ଏକ ଇସ୍ପାତ-ଫୁଲ, ସେ ପାଇଁ ସାଧନା ମୋର,
ତ୍ୟାଗ-ତପସ୍ୟା, ଜୟ-ପରାଜୟ, ଯାତ୍ରା ମୋ ଦୁର୍ବାର ।

ଆଜି ବି ନ ହେଲେ କାଲି,
ମାନବାଦର ଶିବିରୁ ଉଠିବ
ମାନବର ଜୟତାଳି ।
ଏଇ ଆଶା ଆଉ ବିଶ୍ୱାସ ନେଇ
ଅସ୍ତପଥରେ 'ରବି' –
ଯାଉଛି, ଫେରିବି ଉଦୟର ପଥେ
ଆଜୀବନ ବିପ୍ଳବୀ ।



ର.କା.
୧୯, ଅଗଷ୍ଟ, ୧୯୯୬
ରାତି ୨ଟା

# ଆଉ ଥରେ ଆବିଷ୍କାର ଲୋଡ଼ା

(୰ ପଣ୍ଡିତ ଜବାହାରଲାଲ ନେହେରୁଙ୍କୁ ନିବେଦିତ)

ଆଉ ଥରେ ଭାରତକୁ
ଆସି ତମେ ଆବିଷ୍କାର କର
ହେ ପ୍ରାଜ୍ଞ, ହେ ନେହେରୁ
ହେ ପଣ୍ଡିତଦ ଆହେ ଜବାହାର !
ଯେଉଁ ଭାରତକୁ ତମେ
ଆବିଷ୍କାର ଦିନେ ଥିଲ କରି,
ସେ ଭାରତ ଏତ ନୁହେଁ
ଏ ଭାରତ ଏକ ପ୍ରେତପୁରୀ ।
ଇଏ ଏକ ଦୁର୍ନୀତିର ନବ-ବୃନ୍ଦାବନ,
ବହୁରାଧା, କିଛି କୃଷ୍ଣ
ଗୋପୀଲୀଳା, ସିଫ୍‌ଲିଟିକ୍ ପ୍ରେମ ।
ରକ୍ତସ୍ନାତ ଏ ଭାରତ, ଅନ୍ନକ୍ଳିଷ୍ଟ ବିକ୍ଷୁବ୍‌ଧ ଭାରତ,
ହିମାଳୟୁଁ କୁମାରିକା ଭ୍ରାତୃଘାତୀ-ଦଂଗାରେ ଆରତ ।
ସୁବୃହତ୍ କାଚଘର ଏହି ଦେଶ
ଋଣଭାରେ ବକ୍ର ଧନୁବତ୍,
''ପୂର୍ଣ୍ଣକ୍ରାନ୍ତି'', ''ବିଂଶସୂତ୍ରୀ'', ''ରାମରାଜ୍ୟ''
ଖାଲି ପୋଥିଗତ ।
''ରାମ'' ନାହିଁ, ''ରାଜ୍ୟ'' ନାହିଁ
''ସାଇନ୍‌ବୋର୍ଡ଼'' ଝୁଲଇ ନୀରବେ
ବର୍ଦ୍ଧମାନ ବେକାରୀ ଓ କରଭାର
ମଣିଷର ହାହାକାର ରବେ,
ଅନୀତି, କୁନୀତି ଆଉ ସ୍ୱୈରାଚାର
ଫୁଲାଏ ଉଦର,
ଭୀତତ୍ରସ୍ତ ଏ ଭାରତ
ଅନ୍ତରେ ତା ଖାସୁତନ୍ତ୍ର ଚେର —

ଅତ୍ୟନ୍ତ ଗଭୀରେ,
ତାକୁ କିଏ ଓପାଡ଼ିବ ? ସବୁ ଖାସୁ
ପୁରୁଷର ଦଳ କାହିଁ ଗଲେ ?
ପଶୁ ଏଠି ଉପବାସୀ
ପଶୁଖାଦ୍ୟ ଖାଇଛି ମଣିଷ,
ଆଉ ଥରେ ଆବିଷ୍କାର
ଜବାହାର, କର ଏଇ ଦେଶ !
''ସତ୍ୟ-ମେବ-ଜୟତେ''ର ଶିଳାଭାର
''ସଂହତି''ର ସୁତୀକ୍ଷ୍ଣ-ସଂଗୀନ୍
ଦଳିତର ଲହୁଧାରେ ଲାଲେଲାଲ୍
ସର୍ବଦା ରଙ୍ଗୀନ୍ ।

ସ୍ୱାଧୀନତା ପରେ
ଦୁର୍ନୀତିଖୋରଙ୍କୁ ଫାଶୀ
ଦିଆଯିବ ରାଜପଥ ଧାରେ,
ବତୀଖୁଣ୍ଟେ ଝୁଲୁଥିବ ତାଙ୍କ ମର ଦେହ,
ଏଇ କଥା କହିଥିଲ ସେତେବେଳେ
ସେହିକଥା ଆଉଥରେ କୁହ !

ସମୟର ବିଚିତ୍ର ବିଚାର,
ଫାଶୀର ଆସାମୀମାନେ
ଏ ଦେଶରେ ଗଢ଼ିଛନ୍ତି
ତାଙ୍କ ସରକାର ।
ମରିନାହଁ ଜବାହର, ଯାଇଅଛ 'ତରି'
ଜୀଇଥିଲେ ତମକୁ ତ ଦେବାପାଇଁ
ଫାଶୀ ଆଉ ଶୂଳୀ —
ହୋଇଥାନ୍ତା ବିଚାର ବିମର୍ଷ,
ଆଉଥରେ ''ଆବିଷ୍କୃତ'' ହେବା ଚାହି
ଏ ଭାରତ
ଦୁର୍ନୀତିର ଏ ଉପନିବେଶ ।

ସ୍ୱାଧୀନତା ସ୍ୱାଦ ଆଜି
କଟୁତିକ୍ତ
ଜୀବନଟା ନିଃସଂଗ ସାହାରା
ଅଂଧ ଧୃତରାଷ୍ଟ୍ର ଦିଏ
ଶତପୁତ୍ର ମଡ଼ାରେ ପହରା ।
ବାନ୍ଧିନି ତ ଆଜି ତାର ଗଭା
ଭାରତର କୁଳବଧୂ
ନୂଆଭାବେ ସେହି ''କୁରୁସଭା''
ସଂହତ, ସୁଦୃଢ଼ ଆଉ ବଳଶାଳୀ
ହେଣ୍ଡିମାରେ ଦୁଃଶାସନ-ଥାଟ,
ସତୀ ସାଥେ ମୁହୁର୍ମୁହୁ
ହୁଏ ଏଠି ଲଂପଟର ଭେଟ ।

ସୁନାର ରଥେ କେ ଆସେ, ସ୍ୱାଧୀନତା ?
ତାର ସ୍ୱାଗତିକା
ଗାଇବାକୁ ଅସମର୍ଥ
ତପ୍ତଛନ୍ଦ ସଂଗୀତର ଶିଖା ।
ଚାରିଦିଗ ନିର୍ଜୀବ, ନିଷ୍ପ୍ରାଣ
ସକାଳର ନବଭାନୁ
ପୂର୍ବାଶାର ଲୋହିତ କିରଣ ।

ହେ କବି, ଆହେ ଶିଳ୍ପୀ
ହେ ନେହେରୁ, ଆହେ ଜବାହର,
ଭାରତକୁ ଆଉ ଥରେ
କର ଆସି ତମେ ''ଆବିଷ୍କାର'' ।
ଲେଖ ହେ ସତ୍ୟର ତଥ୍ୟ
ଡାକେ ଆଜି ବିପନ୍ନ ହୃଦୟ
କୁହ କୁହ କେତେଦୂରେ
ସେ ଇପ୍‌ସିତ ମୁକ୍ତି ସୂର୍ଯ୍ୟୋଦୟ ?



ର.କା.
୮ ଅଗଷ୍ଟ, ୯୭
(ଆକାଶବାଣୀ, କଟକଂକ ଆନୁକୂଲ୍ୟରୁ)

# ଫୁଲ ଫୁଟିବାର କବିତା

ଫୁଲ ଫୁଟିବାର କଥା ଶୁଣି ପଚି ତ ଗଲାଣି କାନ
ଶୂନ୍ୟନୟନେ ଚାହିଁଛି ବୃନ୍ତ, ଫୁଲର ତ ଦରଶନ –
ଯାଉନି ତ କାହିଁ ଦେଖା,
ଅଦୂରେ ଜଳୁଛି ବ୍ୟର୍ଥ-ଆଶାର ମରୁଆଉ ମରୀଚିକା ।
ଆଉ ଫୁଟିବନି ଫୁଲ,
କଳୁଷିତ ମାଟି, ପ୍ରଦୂଷିତ-ବାୟୁ
ଦୂଷିତ ହୋଇଛି ଜଳ ।
ଫୁଲ ଫୁଟିବାକୁ ହେଲେ,
ତଳଟା ଆସିବ ଉପରେ ଯେଦିନ
ଉପରଟା ଯିବ ତଳେ,
ସମାଜ-ଜୀବନେ ପ୍ରବଳ ଓଲଟ –
ପାଲଟ ନଗଲେ ଦେଖା.
ହୃଦୟେ ହୃଦୟେ, ଅସ୍ତ-ଉଦୟେ
ଜାଗୃତି ହୋମଶିଖା,
ରକ୍ତ ଅଗ୍ନି ଧୂମକୁଣ୍ଡଳି
ନ ମେଲିଲେ ତାର ପୁଚ୍ଛ
ଫୁଟିବ ତ ନାହିଁ ସୁରଭିତ ସେହି
ରକ୍ତ ଗୋଲାପ ଗୁଚ୍ଛ ।
''ଫୁଲ ତ ଫୁଟିବ, ଅପେକ୍ଷାକର !''
.ଆଉ ସେ ଭାଷଣବାଜୀ
ଫୁଲ ଫୁଟିବାର କଥା ଶୁଣି କେତେ
ଗଲେଣି ତ ମରିହଜି !
ଜନ୍ମ ହୋଇନି ଯେ ମାନବ ଶିଶୁ
ସେ ବି ଫୁଲଫୁଟା କଥା –
ଶୁଣିଛି ନୀରବେ ଜନନୀ ଗର୍ଭେ
ଜନନୀ ପ୍ରସବ ବ୍ୟଥା,

ଜନନୀ ହିଁ ଜାଣେ ଜନନୀତ୍ୱଟା
ଗଢ଼ା କେଉଁ ଉପାଦାନେ
ତାହାରି ମହିମା ପ୍ରମାଣ ହୁଏନା ଭାଷଣ, ଉଦ୍‌ବୋଧନେ ।

ଯେ ଫୁଲ ଫୁଟିବ ସେତ ସୁବାସିତ, ହସ ହସ ମୁଖଛବି –
ହେବା ଦରକାର, ସେହି ଫୁଲ ପାଇଁ କବିତା ଲେଖେ ମୁଁ କବି ।
ଆକାଶ-କୁସୁମ କଥା କୁହନାହିଁ, ଆକାଶ ରଂଗ କଳା,
ତାରି ତଳେ ତଳେ ଘାତକ ଦଳର ଯୁଦ୍ଧବିମାନ ଭେଳା
ସେଠି ଫୁଲ ନାହିଁ ଫୁଟେ,
ସେ ଏକ ଶସ୍ତା କୁସୁମର ମାୟା, ମଣିଷର ଚଲାବାଟେ ।

ଫୁଲ ଫୁଟିବାର କାବ୍ୟ ଲେଖେ ମୁଁ
ନିଶ୍ଚେ ଫୁଟିବ ଫୁଲ,
ଆଜିବି ନହେଲେ, କାଲିତ ଖୋଲିବ
ଆଖି ସେହି ଫୁଲ କଢ଼ ।

ସେ ଫୁଲ ମଣିଷ, ତାହାରି ସୁରଭି
ସାମ୍ୟ, ସମତା, ଦିଆ
ଧରା-ଉଦ୍ୟାନେ ମାନବ-କୁସୁମ
ତାର ହାତ ଯଶ ଯାହା
ସୃଷ୍ଟି-ଅର୍ଘ୍ୟ, ସେ ଫୁଲ ଫୁଟିବ
ନୀରବ-ଗୁଞ୍ଜରଣେ,
ତାକୁ ଶୁଣିବାକୁ କରେ ଅପେକ୍ଷା
ବିଦ୍ରୋହୀ କବି ଜଣେ ।
ମୁଁ ତ ସେହି ବିପ୍ଳବୀ,
ଜୀବନ ତମାମ ଲଢ଼ିଛି-ହାରିଛି
ଦେଖିବାକୁ ତାର ଛବି ।



ର.କା.
୧୫ ଅଗଷ୍ଟ, ୯୭
ମଧ୍ୟାହ୍ନ

# ଏକାକଥା

ପନ୍ଦର ଅଗଷ୍ଟ !
ତମକୁ ଆରେଷ୍ଟ
କରିବାକୁ ପ୍ରବଳ ବାସନା ମୋର

ତମକୁ ବଂଦୀ କରି
ତମରି ବିଚାର
କରିବାକୁ ମୋର ଦରବାରେ
ବହୁ ବର୍ଷ ତଳେ
ଇଚ୍ଛାଥିଲା ମୋର ।

ମୁଁ କିଏ ଜାଣ ?
ମୁଁ ହେଲି ଖାତକ୍ ଭାରତର
କୋଟି କୋଟି ଜନସାଧାରଣ ।
ମୁଁ ଆଜି ନିରନ୍ନ, ନିରସ୍ତ୍ର,
ବିଦଳିତ, ଦଳିତ ଆଉ ମଥିତ ।
ଭୋଟ୍-ଭିକାରୀ ମାନଂକ ଭିକ୍ଷାଥାଳର
ମୁଁ ତଣ୍ଡୁଳ ।

ମୁଁ କେବେ ଥିଲି ବୀର
ଥିଲି ମୁକ୍ତି ଯୋଦ୍ଧା !
ଆଜି କିନ୍ତୁ
ମୂଲ୍ୟବୋଧର ଅଭାବ
ଅପ-ସଂସ୍କୃତିର ପ୍ରଭାବରେ
ଧୀରେ ଧୀରେ ମୋର ସ୍ୱଭାବ
ବିକୃତ, ବିଷାକ୍ତ, ନିଶାସକ୍ତ,

ମୁଁ ଆଜି ମଧପଛୀ,
ଆତ୍ମକେନ୍ଦ୍ରୀ-ସ୍ୱାର୍ଥର ଘଣାରେ
ମୁଁ ବଳଦ ।
ମୋର ଯାହା ଖାଦ୍ୟ
ତାକୁ ଦେଲାଖାଇ
ଦି ଗୋଡ଼ିଆ ''ଲାଲୁ''
ତାକୁ ଆଜି ଧରିଛି ସି.ବି.ଆଇ.
ରାଜନୀତି-ଜଂଗଲର
ସିଏ ଏକ ଭାଲୁ ।

ମୁଁ ହେଲି ଜନସାଧାରଣ
ଦୁର୍ନୀତିଖୋରମାନେ ମୋତେ କୁହନ୍ତି :
ମୁଁ କୁଆଡ଼େ, ''ନର-ନାରାୟଣ !''
ମୁଁ ଶୋଇଛି ''ସତ୍ୟ-ମେବ''ର
ପାଷାଣ-ଚାପାରେ ।

ମୋ ସହିତ ଯେତେ ସବୁ ବାନ୍ଝ
ବଜାଉଛନ୍ତି ନାଚି ନାଚି ଝାଞ୍ଜ
କରିବାକୁ ଧର୍ମର ଅର୍ଜନ
ମହୋଦଧିର ଗର୍ଜନ
ଶୁଭେ ଦୂରେ ............
ବିଦ୍ରୂପରେ ।।

ଭାରତ ଭୂଖଣ୍ଡରେ
୧୪୫ ପ୍ରକାରର ଚିତା
୨୨ ପ୍ରକାରର ମାତା
୨୮ ପ୍ରକାରର ବାବା
ଅନିତ୍ୟ-ରତିରେ କଟିଯାଏ ରାତି
ତମାମ ଦେଶରେ
ମନି-ଯୋନି-ଖୁନୀର ରାଜନୀତି ।

ଏଠି ଗଣେଶ ପିଅନ୍ତି ଦୁଧ
ମହାଦେବ ଖାଆନ୍ତି ଆପେଲ୍
ବେକାର ଟୋକାଙ୍କ ପାଦରେ
ଏଠି ନଥାଏ ଚପ୍ପଲ୍ ।

ପୁଲିସ କନେଷ୍ଟବଳ
ମାସ ମାସ ଧରି ନପାଇ ଦରମା
ଅସାମାଜିକ ଲୋକଙ୍କୁ କରଇ ଦମନ ।

ଏଠି ଯାହାକିଛି ଘଟେ
ସବୁ ''ପ୍ରଭୁଙ୍କ ଲୀଳା'' ।
ହସ୍ତ ଚାଳନା ଆଉ ଧର୍ଷଣ ମାମଲା,
ପଶୁଖାଦ୍ୟ ହେର୍‌ଫେର,
ହାଓଲା, ବୋଫର୍ସ ଇତ୍ୟାଦି
ଯେତେ ସବୁ ଫିସାଦି ଆଉ କାରସାଦି
ଦେଶର ବଡ଼ ରାଜନୀତି ।
ମୁଁ ସମସ୍ତଙ୍କୁ ଜଣାଏ ପ୍ରଣତି .........
ଅଗତିର ଗତି ........
ହେଉଛି ଦୂର୍‌ନୀତି ।।

ମୋ ଭିତରେ ଐତିହାସିକ-ହିଞ୍ଜଡ଼ା ପ୍ରକୃତି
ଜମେ ଧୀରେ ଧୀରେ
ଲଘୁଚାପ ପରି ।।

ମୋର ସାମାନ୍ୟ ପୁରୁଷାକାର
ଥିଲାପରି
ଲାଗେ ମୋତେ ।
ସେଇ କହେ : ତମକୁ ମୁଁ
କରନ୍ତି ଆରେଷ୍ଟ,
ପନ୍ଦର ଅଗଷ୍ଟ ।।

ମନକୁ ମନ ମୁଁ କହିଉଠେ :
''ମଲା ମୋର ! ମୋର କିଏ ସେ କାମ
କରିବ ମ ?''
ନିଜ ପ୍ରତି ଆସୁଛି ଧିକ୍କାର,
ମୁଁ ଭାରତର ମହାନ ଜନସାଧାରଣ
ପୁଣି କୁଆଡ଼େ ''ନର-ନାରାୟଣ !''

ମୋର ସଂଖ୍ୟା ଯେତିକି
ମୁଁ ସେତିକିଟି ''ବ୍ୟାଲଟ୍'' ।
ଭୋଟ୍ ଦେବା ପାଇଁ ମୋର ଜନ୍ମ ।

ଭୋଟ୍ ଦେଲେ ବି କିଛି ଲାଭନାହିଁ,
ନଦେଲେ ବି କିଛି କ୍ଷତି ନାହିଁ ।
ଯିଏ ''ସ୍ୱାମୀ ଦେବତା'' ହେବ
ସିଏ ଯାହା କରିବା କଥା ଅଲବତ୍ କରିବ ।
ମୋର କିଛି କରିବାର ନାହିଁ ।

ସ୍ୱାଧୀନତା – ପରାଧୀନତା
ପ୍ରଭୁତ୍ୱ - ଦାସତ୍ୱ
ସବୁ ମୋ ପାଖରେ ଏକାକଥା ।



ର.କା.
୧ ଅଗଷ୍ଟ, ୧୯୯୯୭
ଅପରାହ୍ନ

# ଆବାହନୀ

ବୁଡ଼ିବା ଆଗରୁ ନୈତିକତାର ନାବ
ମୃତ୍ୟୁ ହେ, ମୋତେ ବିଶ୍ରାମ ଦିଅ କୋଳେ !
ବିଷପାନ ଆଜି କରିଛି ସତ୍ୟ-ଶିବ
ଭୂଗୋଳ ଭରିଛି ପଶୁର ତ କୋଳାହଳେ ।

ଅସୁରପୁରୀରେ ଆସର ଜମିଛି ଆଜି
ଦୈତ୍ୟ ଉଡ଼ାଏ ଦାନବବାଦର ନେତ
ମଣିଷ ଚାଲିଛି ସଂତ୍ରାସେ ଭିଜିଭିଜି
ଶୋକର ସିତାର୍ ବାହୁନଇ ଅବିରତ ।

ଇତିହାସ-ଚକ ପଛକୁ ବୁଲୁଛି ଦ୍ରୁତ
ଜନ୍ମୁଛି ନିତି ନୂଆ ନୂଆ ବିକୃତି
ପଚାରନା ମୋତେ, ପଚାରନା ପ୍ରାଣମିତ
କେଉଁ ନରକକୁ ମଣିଷ ସମାଜ ଗତି ?

ଫୁଲ ତ ଫୁଟୁନି ଲତାର କୁଞ୍ଜ କୋଳେ
ଉଷାର ଶଂଖ ବାଜୁନି ରାତ୍ରିଶେଷେ
ବିହଗ-କୂଜନ ଶୁଭୁନାହିଁ ନିଶିଭୋରେ
ମଣିଷଟା ଆଜି ପରବାସୀ ନିଜ ଦେଶେ ।

ଯୌତୁକଲୋଭ-ଖଡ୍‌ଗ ଝୁଲୁଛି ଶିରେ
ଧର୍ଷିତା ହୁଏ ମାତା-ଭଗିନୀର ଜାତି
କର୍ଷିତଭୂମେ ଫସଲର ଅଂକୁରେ
ପଙ୍ଗପାଳର ବର୍ଦ୍ଧିତ-ବଜ୍ରାତୀ ।

ମଣିଷ ପାଇଁକି ମାଟି ହରାଇଛି ଭାଷା
ଆକାଶର ଆଜି ଭୀମ-ଗମ୍ଭୀର ମୂହଁ,
ଲୁଚି ତ ଗଲାଣି ଜହ୍ନର ଆଡ଼ଭୂଷା
ଚନ୍ଦ୍ରମୁଖୀର ଆଖିରେ ଆଖିଏ ଲୁହ ।

ସବୁ ହତଶିରୀ, ଯଉବନ ଯୁ-ହୀନ
ଶୈଶବ ଆଉ କୈଶୋର ଅନାହାରୀ,
ମଣିଷ ହୃଦୟେ ପଶୁର ସିଂହାସନ
ଭାଇ ବୁକେ ଭାଇ ବସାଉଛି ତାର ଛୁରୀ ।

ଯାର ପ୍ରତିକାର ନହେଲେ ନଚଳେ, ସବୁ –
ଯାହା ଅଛି ତାହା ଜଳିହେବ ଧାରଖାର
ଦଧିଚୀର ହାଡ଼ ଉଜାଡ଼ି ଦେବାକୁ ବାବୁ
ଯଦି କିଏ ଅଛ ହୁଅ ଆଜି ଆଗଭର ।

ଯଦି ବିଦ୍ରୋହୀ ଅଛ କେ ଲକ୍ଷ୍ମୀଛଡ଼ା
ରହିଲା ତମକୁ ମଣିଷ ଜାତିର ରାଣ,
ଅକାଳ ମରଣେ ହୋଇଛ ଯେ ବାସୀମଡ଼ା
ତମଣ ଭିତରେ ଜୀବନର ଜାଗରଣ –

ନଘଟିଲେ ଭାଇ ଅପୂଜା ରହିବ ଦେବୀ
ମାନବ ମୁକ୍ତି ଦେବନାହିଁ ମୋଟେ ଦେଖା,
କାନ୍ଦୁ ତ ଥିବ ବାଲ୍ମିକୀ ମହାକବି
ଅକ୍ଷତ ଥିବ ନିଷାଦର ବିଭୀଷିକା ।



ର.କା.
୨୯ ଜୁଲାଇ ୧୯୯୭
ସଂଧ୍ୟା

# ଖସାଅ ମୁକୁଟ !

ଯେଉଁ ମୁକୁଟଟା ଢାଙ୍କି ରଖିଛି

ଅତ୍ୟାଚାରୀର ମଥା,

କେ ଅଛ ଯୁଆନ୍ ଖସାଅ ତାହାକୁ

ନର-ଦାନବବର ହାତକୁ ଦେଇଛି

ଯିଏ କ୍ଷମତାର ସୁନାବାଡ଼ି, ପାଟଛତା ।

ଭୋଅଟ ବାଟରେ ସେହି ସେ ମୁକୁଟ

ଧରାଶାୟୀ ହେବ ନାହିଁ,

ଆଘାତ ନକଲେ ରୁଦ୍ଧ-ଦୁଆର

ଖୋଲେନାହିଁ, ଖୋଲି ନାହିଁ ।

ସେ ମୁକୁଟ ତଳେ ଅନା !

ଅଛି ଯା ମୁଣ୍ଡ, ସହଜେ ହେବନି ଚୁନା

ମୁକୁଟଟା ଖସି ନପଡ଼ିଲେ ତଳେ

ବିଦ୍ରୋହ ନିଆଁ ଦେଶେ ନଜଳିଲେ

ଯେ ଯାଏଁ ଯାଇନି ଉପରଟା ତଳେ

ତଳଟା ଉପରେ ଯେ ଯାଏଁ ଆସିନି ଉଠି,

ଚୋର ଗଲେ ଡାକୁ ଧରୁଥିବେ ଆସି

ନିତି ମଣିଷର ଚୁଟି ।

ତମାମ୍ ଦେଶରେ ଚାଲୁରହିଥିବ

ରାଜନୀତି - ରାମଲୀଳା,

ଦେଖଣାହାରୀଏ ରାତି ଅନିଦ୍ରା

ରାମ ଓ ରାବଣ ଗଡ଼ାଗଡ଼ି, ଠେଲାପେଲା ।

ରାତି ତ ପାହିଲେ ସରୁଥିବ ଲୀଳା

ରାମ ଓ ରାବଣ ସକାଳୁ ଗୁଡ଼ାଖୁ ଧରି,

ହସାହସି ହୋଇ ନଈକୂଳକୁତ
ଗଲାବେଳେ ଝାଡ଼ାଫେରି;
ସରଳ, ନିରୀହ ଜନସାଧାରଣ
ହେବେ ଫୁସ୍ ଫାସ୍ ''ଏକି ଅଘଟଣ
କାଲି ଏ ଦିଇଟା ଛାମୁଡ଼ିଆ ତଳେ
ହେଉଥିଲେ ଗଡ଼ାଗଡ଼ି,
ହାୟରେ କପାଳ, ସକାଳୁ ଏଇକି
କୋଳାକୋଳି ଯୋଡ଼ାଯୋଡ଼ି !''

ଭୁଲନା ଭୁଲନା ହେ ସରଳମନା
ଗୋଟିଏ ଯାତ୍ରାପାର୍ଟିର ସେମାନେ ଲୋକ,
ଯିଏ ପାଣ୍ଡବ, ସିଏ କୌରବ
ସବୁ ତ ଭଣ୍ଡ, ଧଡ଼ିବାଜ୍ ଆଉ ଠକ ।
ନିତି ନୂଆ ବେଶ ଧରି,
ହାତେ ଝକମକ ଟିଣର ଖଣ୍ଡା
ଚିକ୍ ଚିକ୍ ହୁଏ ପୋଷାକରେ ଲଗା ଜରି ।
ହିଞ୍ଜଡ଼ା ସାଜେ 'ସୀତା ଠାକୁରାଣୀ'
ଅଥବା 'ଭାରତମାତା' ।
ରାମ ହୁଏ ଦାମ, ରଥେ 'ମହାରଥୀ'
ମାଫିଆ ତ ଜନନେତା ।
ଦେହରେ ଖଦଡ଼ ଧୋତି-ପଞ୍ଜାବୀ
ଆଗରେ ପଛରେ ଟାଉଟର, ବଡୀପେଲା,
ଗୋଟିଏ ଦଳର ଲୋକ ସବୁଯାକ
ନାନାବେଶ ଆଉ ନାନା ପୋଷାକର ତଳେ,
ବହୁ ରୂପେ ଆସେ ବହୁରୂପୀ ଦଳ
ମଣିଷକୁ ଠକି ଉମର କଟାଇ ଦେଲେ ।
ଶତ୍ରୁ କିଏ ସେ, ମିତ୍ର କିଏ ସେ ଜଣାତ ପଡ଼ିଲା ନାହିଁ,
ଘରେ ତ ବାହାରେ ମାୟା-ମରୀଚିକା
ପ୍ରେତ-ପିଶାଚର ଛାଇ ।

ସବୁ ବେନିୟମ, ସବୁ ତ ବେଠିକ୍
ଦାନବ ମଥାର ମୁକୁଟ ରହିଛି ଠିକ୍
ମଶାଣିର ଡେଣେ ଠିକ୍ ତ ଚାଲିଛି
ଶ୍ୱାନ-ଶୃଗାଳର ହସଖୁସି, ପିକ୍‌ନିକ୍ ।
ମନେ ମନେ ଜଳେ ଧାଡ଼ି ଧାଡ଼ି ଚିତା
ତାରୁଣ୍ୟ ପଢ଼େ ବେକାରୀର ଗୀତା
ଆଗରେ-ପଛରେ ଶୂନ୍ୟ ସାହାରା
ଅଜଣା ଆଗାମୀ କାଲି,
ପୁରୁଣା-ତାସ୍‌ରେ ନୂଆ ଖେଳ ଜମେ
କୂଟ-ଶକୁନିର ଅଭିନବ ପଶାପାଲି ।
ଚେତନା ପଙ୍ଗୁ, ବିବେକଟା ମୂକ
ବୁଦ୍ଧି ତ ବାଟବଣା ।
ବୁଦ୍ଧିଜୀବୀର ଦଳ ଦେବାଳିଆ
ଦୁର୍ଯ୍ୟୋଧନ ଓ ଦୁଃଶାସନର କିଣା ।
ଲୁଣଖିଆ ଗୁଣ କୀର୍ତ୍ତନକାରୀ ସ୍ଥିତାବସ୍ଥାର ଭାଟ,
ହାତରେ ଭୋଅଟ ଭିକ୍ଷାର ଝୁଲି
ନୋଅଟ ଭେଳାରେ ଭବନଦୀ ଏକା
ପାରିହେବା ପାଇଁ ବାଟ ।

ମୁକୁଟର ତଳେ ଅତ୍ୟାଚାରୀର ମଥା ନିରାପଦ
ମୁକୁଟ ଖସିବା ଚାହି,
ଭୋଅଟରେ କେବେ ମୁକୁଟ ଖସେନା
ଶୋଷଣବାଦର ଭିତ୍ତି ଧସେନା
ମାନବ ମୁକ୍ତି ସାମ୍ୟ, ସମତା
ଭୋଅଟ ଭେଳାରେ ବସିଲେ ତ ଆସେନାହିଁ ।
ଚେତନାର ଝଡ଼େ ଆଘାତେ ଓ ଘାଡ଼େ
ରୁଦ୍ରଝଡ଼ର ଧୂସର ବଦ୍ଧମୁଠା,
ସିଂହାସନକୁ ଚୁନାକଲେ ସିନା
ସ୍ଥିତାବସ୍ଥାର ଭିଟା ।

ବଳଦର୍ପୀର ମଥାର ମୁକୁଟ
ସେହି କରିପାରେ ଚୁନା,
ଜୀବନ ପାଇଁ କି ଆଣେ ସେ ମରଣ
ପରିଶୋଧ କରେ ଯୁଗଯୁଗାନ୍ତ
ଅତ୍ୟାଚାରର ଦେଣା ।

କେବେ ସେ ଆସିବ କେହି ପତାରନା
ମନକୁ ମନ ତ କେବେ ସେ ଆସେନା
ଆଣିବାକୁ ହେବ ଡାକି,
ପ୍ରହରହୀନ ଏ ରାତି ପାହିବନି
ପୂର୍ବଗଗନେ ଆପେ ଫୁଟିବନି
ଲାଲ୍ ମନ୍ଦାର କୁସୁମ ସୂର୍ଯ୍ୟମୁଖୀ ।
ଏଇ ପିଶାଚିନୀ ରାତିକୁ ବିଦାୟ
ଦେବାଲାଗି ହେବ ସୂର୍ଯ୍ୟ ଉଦୟ ପାଇଁ
ଆଲୋକୋଜ୍ଜ୍ୱଳ ଉଷାର ଶଂଖ
ହୃଦୟୁଁ ବାଜିଲେ ଯାଇ
ଯେତେ ତ ବଂକା ସବୁ ହବ ସିଧା
ସମାହିତ ହେବ ଅବରୋଧ, ବାଧା!
ଯଉବନ-ବନ-ବିହାରୀ-ତରୁଣ
ଅରୁଣ-ପଉଜ ଦଳ,

ରାତିର କୋଟରୁ
ଅପସଂସ୍କୃତି ପକ୍ଷପୁଟରୁ
ବାହାରି ନଆସି ଉଜାଡ଼ି ନଦେଲେ
ଦଧିଚୀ ମାଂସ, ହାଡ଼,
ଆରେରେ ଲକ୍ଷ୍ମୀଛଡ଼ା !
ଅଭିଶାପ ଦେବ ତମକୁ ଯୁଆନ
ବସି ଇତିହାସ ବୁଢ଼ା ।

କହିବ ତମକୁ : ମଣିଷ ଜାତିର
ତମେ ତ କୁଳାଙ୍ଗାର,
ଦାନବବାଦର ମୁକୁଟ ଖସାଇ
ପୃଥିବୀମାତାର ପାଦତଳେ ଉପହାର –
ଦେଇ ପାରିଲନି ? ଧିକ୍‌ରେ ୟୁଆନ୍
ମହାକାଳର ଯେ ବିଚାରର କାଠଗଡ଼ା –
ଭିତରେ ସବୁ ତ ଠିଆ ହେବ ଦିନେ
ଅପରାଧ ତମ ପ୍ରମାଣ କରିବେ
ମଶାଣିର କୋଟି ମଡ଼ା ।

ଖସାଅ ମୁକୁଟ, ସ୍ୱେଚ୍ଛାଚାରୀର
ମୁଣ୍ଡଟାକୁ ଯେ ରଖିଅଛି ନିରାପଦ,
ଜନ୍ମହୋଇନି ଯେଉଁ ମହାପ୍ରାଣ
ମାତାଗର୍ଭରେ ଅଛି ଯେଉଁ ଭ୍ରୁଣ
ତାକୁ ତମେ ଦେବ ସେହି ସେ ମୁକୁଟ ଚୁନା ହେବା ସମ୍ଭାବ ।

ଜନଶତ୍ରୁକୁ ପଥଧାର ବତୀଖମ୍ବରେ ଦିଅ ଫାଶୀ,
ସ୍ୱର୍ଗକୁ ଆଣ ପୃଥ୍ୱୀମାତାର ପାଦତଳେ କର ଦାସୀ ।
ଯଦି ନପାରିବ, ତାହେଲେ ସମୂହ ଆତ୍ମହତ୍ୟା କର !
ବଞ୍ଚିରହିବା ପାଇଁକି ତମର
ନାହିଁ ନାହିଁ କିଛି ନୈତିକ ଅଧିକାର ।



ର.କା.
୫ ଜୁଲାଇ, ୧୯୯୭
ମଧ୍ୟରାତ୍ରି



କବି ରବି ସିଂ : ଆଧୁନିକ ଓଡ଼ିଆ ସାହିତ୍ୟରେ ବିପ୍ଳବ ଓ ବିଦ୍ରୋହର ଅନ୍ୟ ଏକ ନାମ । ୫୦ ଦଶକରେ ରବି ସିଂ ଓଡ଼ିଆ ସାହିତ୍ୟର ଦିଗ୍‌ବଳୟରେ ଉଦିତ ହୋଇ ନଥିଲେ ଓଡ଼ିଆ ସାହିତ୍ୟର ମାର୍କସ୍‌ବାଦୀ ଧାରା ସେଇଠି ବିଲୁପ୍ତ ହୋଇଥାନ୍ତା ।

କବି ରବି ସିଂ କେବଳ କବି ନୁହଁନ୍ତି, ଜଣେ ଶକ୍ତିଶାଳୀ ଗଦ୍ୟସ୍ରଷ୍ଟା, ପ୍ରାବନ୍ଧିକ, ଅଗ୍ନିବର୍ଷୀ ବକ୍ତା, ସାମ୍ବାଦିକ, ବହ୍ନିମାନ ବୁଦ୍ଧିଜୀବୀ ଓ ବିପ୍ଳବୀ ଚିନ୍ତକ ।

ରବି ସିଂ ଆଧୁନିକ ଓଡ଼ିଆ ସାହିତ୍ୟର ଏକ ଆଗ୍ନେୟ ତଥା ବେସାଲିସ୍ ଇତିହାସ । ଜୀବନ ବିଶ୍ୱବିଦ୍ୟାଳୟରେ ତାଙ୍କ ପରି ବ୍ରତୀ ଛାତ୍ର କେବଳ ହୋଇ ପାରନ୍ତି ଭୀମଭୋଇ, ବୈଷ୍ଣବ ପାଣି, ଗର୍କୀ, କାଜୀ ନଜ୍‌ରୁଲ୍ ଇସ୍‌ଲାମ୍, ଗଂଗାଧର ମେହେରଙ୍କ ଭଳି କାଳଜୟୀ ପ୍ରତିଭାଧରମାନେ ।

ରବି ସିଂ ଆଜନ୍ମରୁ ବିଦ୍ରୋହ ଏବଂ ବିପ୍ଳବର ବୈତାଳିକ ଆଉ ଏକକ ଅଶ୍ୱାରୋହୀ ଏବଂ ଦୁର୍ବାର ନିଃସଙ୍ଗ ପଦାତିକ ।

ରବି ସିଂଙ୍କ କାବ୍ୟକଂଠ ଧ୍ୱନି ପ୍ରଧାନତଃ ଉଚ୍ଚତର ମାନବବାଦର ଉଦାତ୍ତ ଇସ୍ତାହାର !